साहित्य

ଭାରତୀୟ ସାହିତ୍ୟସ୍ରଷ୍ଟା ଗ୍ରନ୍ଥମାଳା

# ବିନୋଦ ନାୟକ

ଆଦିକନ୍ଦ ସାହୁ



ଭାରତୀୟ ସାହିତ୍ୟସ୍ରଷ୍ଟା ଗ୍ରନ୍ଥମାଳା

# ବିନୋଦ ନାୟକ

ଆଦିକନ୍ଦ ସାହୁ




ସାହିତ୍ୟ ଅକାଦେମି

*Binod Nayak* : A monograph on Odia poet by Adikanda Sahoo, Sahitya Akademi, 2011. Price : Rs. 40



ISBN : 978-81-260-3293-8

ପ୍ରଥମ ପ୍ରକାଶ : ୨୦୧୧

ସାହିତ୍ୟ ଅକାଦେମି

ରବୀନ୍ଦ୍ର ଭବନ, ୩୫ ଫିରୋଜ ଶାହା ରୋଡ୍, ନୂଆଦିଲ୍ଲୀ ୧୧୦୦୦୧

ବିକ୍ରୟ କେନ୍ଦ୍ର :'ସ୍ୱାତୀ', ମନ୍ଦିର ମାର୍ଗ, ନୂଆଦିଲ୍ଲୀ ୧୧୦୦୦୧

୪, ଦେବେନ୍ଦ୍ରଲାଲ ଖାନ୍ ରୋଡ୍, କୋଲକାତା ୭୦୦୦୨୫

ଗୁଣ କମ୍ପ୍ଲେକ୍ସ, ମେନ୍ ବିଲ୍ଡିଂ, ୪୪୩ (୩୦୪) ଆନ୍ନାସଲାଇ, ଟେନାମପେଟ୍, ଚେନ୍ନାଇ ୬୦୦୦୧୮

୧୭୨ ମୁମ୍ବାଇ ଗ୍ରନ୍ଥ ସଂଗ୍ରହାଳୟ ମାର୍ଗ, ଦାଦାର, ମୁମ୍ବାଇ ୪୦୦୦୧୪

ସେଣ୍ଟ୍ରାଲ କଲେଜ କ୍ୟାମ୍ପସ, ୟୁନିଭର୍ସିଟି ଲାଇବ୍ରେରୀ ବିଲ୍ଡିଂ, ଡ. ଆମ୍ବେଦକର ଭିଧି, ବେଙ୍ଗାଲୁର ୫୬୦୦୦୧

ମୂଲ୍ୟ : ୪୦ ଟଙ୍କା

ଅକ୍ଷର ବିନ୍ୟାସ :

କଳିଙ୍ଗ ମୁଦ୍ରଣୀ, ୭୬ବି, ଅଖିଳ ମିସ୍ତ୍ରୀ ଲେନ୍, କୋଲକାତା ୭୦୦୦୦୯

ମୁଦ୍ରଣ :

ଜୟଶ୍ରୀ ପ୍ରେସ୍, ୯୧/୧ବି, ବୈଠକଖାନା ରୋଡ୍, କୋଲକାତା ୭୦୦୦୦୯

# ସୂଚୀପତ୍ର

## ଉପକ୍ରମଣିକା

ଓଡ଼ିଆ ସାହିତ୍ୟରେ କବି ବିନୋଦ ଚନ୍ଦ୍ର ନାୟକ (୧୯୧୯-୨୦୦୩) ଅତ୍ୟନ୍ତ ସୁପ୍ରତିଷ୍ଠିତ। ଆଜୀବନ ସାଧକ କବି ବହୁ ଗ୍ରନ୍ଥର ପ୍ରଣେତା ।

ତାଙ୍କର ଜନ୍ମ ୧୯୧୯ ଖ୍ରୀ ସେପ୍ଟେମ୍ବର ୨ ତାରିଖ, ସୁନ୍ଦରଗଡ଼ ଜିଲ୍ଲା ଅନ୍ତର୍ଗତ ତେଲପାଲି ଗ୍ରାମରେ । ତାଙ୍କ ପିତାଙ୍କ ନାମ ନାରାୟଣ ଚନ୍ଦ୍ର ନାୟକ ଓ ମାତାଙ୍କ ନାମ କସ୍ତୁରୀ ଦେବୀ । ତାଙ୍କର ମୃତ୍ୟୁ ୨୦୦୩ଖ୍ରୀ ନଭେମ୍ବର ୧୫ ତାରିଖରେ ।

ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ନିୟମିତି ଲେଖନୀ ଚାଳନା କରିଥିବା କବି ବିନୋଦ ଚନ୍ଦ୍ର ନାୟକ ଓଡ଼ିଆ ସାହିତ୍ୟରେ ଏକ ଅତି ପରିଚିତ ନାଁ । ସୁନ୍ଦରଗଡ଼ ପରି ବଣ ପାହାଡ଼ ପରିବେଷ୍ଟିତ ଏକ ମାଳଅଞ୍ଚଳ ପୃଥିବୀରେ କବି ତାଙ୍କର ଶୈଶବ ଅତିବାହିତ କରିଥିଲେ । ଲୋକ ସାହିତ୍ୟ ଓ ସଂସ୍କୃତି ତାଙ୍କୁ ବିଶେଷ ଭାବେ ପ୍ରଭାବିତ କରିଥିଲା। ସେ ଅଧିକ ବିଶ୍ୱମୁଖୀ ହୋଇଥିଲେ ହେଁ ବହୁ ଆଞ୍ଚଳିକ ଚିତ୍ର ତାଙ୍କ ସାହିତ୍ୟରେ ଫୁଟି ଉଠିଛି ।

ତାଙ୍କ କବିତାରେ ମାଟି ଓ ଆକାଶର ବର୍ଣ୍ଣନା ସବୁଠାରୁ ବେଶୀ ମାର୍ମିକ ହୋଇଛି।

କେତେଜଣ ପାଠକ ଓ ସମୀକ୍ଷକ କବି ବିନୋଦ ନାୟକଙ୍କୁ ବୈଦେଶିକ ଓ ପଳାୟନପନ୍ଥୀ କହି ଆକ୍ଷେପ କରିଛନ୍ତି । ଆଉ କେତେଜଣ ତାଙ୍କ ପ୍ରଣୟ ଚେତନାକୁ ଆଦୌ ପସନ୍ଦ କରି ପାରି ନାହାନ୍ତି । ତାଙ୍କୁ ଅତ୍ୟଧିକ ନାରୀ ପ୍ରେମୀ ବୋଲି କହି ନିନ୍ଦା କରିଛନ୍ତି । ଅଥଚ କଳା ଓ କବିତା ଦୃଷ୍ଟିରୁ ତାଙ୍କ କବିତାର ଚମତ୍କାରିତା ସେମାନେ ଆଦୌ ଦେଖି ନାହାନ୍ତି । ତାଙ୍କ ଭାବ ଆବେଦନକୁ କଳନା କରି ନାହାନ୍ତି । କବିତାର ଛନ୍ଦପୁଣି କେତେ ଚମତ୍କାର ହୋଇପାରେ, କେତେ ଶ୍ରବଣ ସୁଖଦାୟକ ହୋଇପାରେ ସେମାନେ ତା'କୁ ଆବୃତ୍ତି କରି ମୁଗ୍ଧ ହୋଇ ପାରି ନାହାନ୍ତି । ଇଳାବୃତ୍ତର କବି କହିଲେ ଓଡ଼ିଶାରେ ସଭିଏଁ ତାଙ୍କୁ ଅନନ୍ୟ ଛନ୍ଦଲାଳିତ୍ୟ ବା ମାଧୁର୍ଯ୍ୟର କବି ବୋଲି ଚିହ୍ନନ୍ତି। ଶୃଙ୍ଗାର-ରସିକତା ତଥା କଳ୍ପନାବିଳାସର ଉତ୍ସ ଭାବେ ତାଙ୍କ କବିତାକୁ ତାରିଫ କରନ୍ତି।

ଶବ୍ଦ ଚୟନରେ ସେ ଥିଲେ ଅଧିକ ଶାସ୍ତ୍ରୀୟ ଓ ବିଚକ୍ଷଣ । ଦୂର ପୃଥିବୀର କଥା କହିଲା ବେଳେ ସୃଜନ ଅନୁଭବ ତାଙ୍କର ସମୁନ୍ନତ ସ୍ତରକୁ ଉନ୍ନୀତ ହୋଇଯାଇଛି। କବି ବିନୋଦ ଚନ୍ଦ୍ର ନାୟକଙ୍କ ମତରେ କବିତା ଆତ୍ମା ଏବଂ ଆତ୍ମା ମଧ୍ୟରେ ବିନିମୟ ହେଉଥିବା ଏକ ଅନିର୍ବଚନୀୟ ଭାଷା। ଭାବ ସେତିକି ମଧୁର ନହେଲେ ତା'ର ଭାଷାଭିବ୍ୟକ୍ତି ମଧ୍ୟ ସେତିକି ମଧୁର ହେବନି ।

ବିନୋଦ ନାୟକଙ୍କ କବିତା ସ୍ମୃତି ପରି ବେଦନା ବିମଥିତ ହେଲେ ବି ମଧୁର ଲାଗେ। ତାଙ୍କ ମତରେ ସତେ ଯେପରି ଶ୍ରମ ନାହିଁ ତ ଜୀବନ ନାହିଁ ।

କେତେଜଣ ସମାଲୋଚକ କହନ୍ତି: ଓଡ଼ିଆ କବିତାକୁ ନୂଆ ମୋଡ଼ ଦେବାରେ ସେ ଅନ୍ୟ ସମସାମୟିକ କବିମାନଙ୍କ ଠାରୁ ତାପେ ବାଟ ଆଗରେ । ଭାଷା ପ୍ରୟୋଗ, ଛନ୍ଦ ଯୋଜନା, ପ୍ରେମ ପ୍ରଣୟର ଚିତ୍ର ଆଙ୍କିବା, ଇନ୍ଦ୍ରିୟଗ୍ରାହ୍ୟ ମେଟାଫର୍ ପ୍ରୟୋଗ କରିବା ଆଦି ବହୁ ଦୃଷ୍ଟିରୁ କବି ବିନୋଦ ଚନ୍ଦ୍ର ନାୟକ ସମସ୍ତଙ୍କ ଠାରୁ ବାରି ହୋଇ ପଡ଼ନ୍ତି। ମାୟାଧର ମାନସିଂହ ତଥା ରାଧା ମୋହନ ଗଡ଼ନାୟକଙ୍କ ଠାରୁ ତାଙ୍କ ଶବ୍ଦ ଯୁଗ୍ମ ନିର୍ମାଣ ଅଲଗା ମନେହୁଏ ।

ଡକଟର ମାୟାଧର ମାନସିଂହ ବିନୋଦ ଚନ୍ଦ୍ର ନାୟକଙ୍କ ସଂପର୍କରେ ମନ୍ତବ୍ୟ ଦେଇ କହିଛନ୍ତି: "Binod Chandra Nayak, an avant garde is notorious in contemporary Oriya literature for his deliberate Outlandish Poetic behaviour' (The Illustrated Weekly of India-1962) "

ସେ ପ୍ରବଳ ଭାବରେ ରୋମାଣ୍ଟିକ ଆଉ ତାଙ୍କର ଏହି ସ୍ୱୈରବାଦୀ ପ୍ରବଣତା ଏକାନ୍ତ ବାଦସାହୀ ଢଙ୍ଗର ଅତି ସାମନ୍ତୀୟ । ସର୍ବହାରା ମାନଙ୍କ ପାଇଁ ବିପ୍ଳବ କରିବାର ତୋଫାନୀ ଶପଥ ତାଙ୍କ କବିତାରେ ନାହିଁ। କଷଣ, ଶୋଷଣ ଓ ଦାରିଦ୍ର୍ୟର ଚିତ୍ର ନାହିଁ। ମାତ୍ର ଯୁଗଯୁଗ ଧରି ମଣିଷ ପ୍ରେମ ପାଇଁ ହୃଦୟର ଯେଉଁ ବ୍ୟଥାପାଏ, ବିରହର ତୀବ୍ର ଜ୍ୱଳନରେ ଯେମିତି ଜର୍ଜ୍ଜରିତ ହୁଏ ବିନୋଦ ଚନ୍ଦ୍ର ନାୟକଙ୍କ କବିତା ତା'ର ଏକ ମାର୍ମିକ ଆଲେଖ୍ୟ ଯେପରି ।

କବିତା ରଚନାର ପାରଂପରିକତା ଠାରୁ ସେ ଆପଣା କବିତାକୁ ଅଲଗା କରି ଆଣିଛନ୍ତି। ଜାଗତିକ ଦୁଃଖ, ଜାତିପ୍ରେମ, ସ୍ୱଦେଶପ୍ରୀତି ଆଦି ଅପେକ୍ଷାକୃତ ଅକାବ୍ୟିକ ବିଷୟକୁ ସେ ତାଙ୍କ କବିତାର ବିଷୟ ପରିସରକୁ ପ୍ରାୟ ଆଣି ନାହାନ୍ତି।

'ବୃସ୍ଲ ଝାମାନ୍ତର ଏକ ଭୂମିକା' ଆଦି କେତୋଟି କବିତା ମାତ୍ର ତାଙ୍କ କାବ୍ୟାଦର୍ଶର ବ୍ୟତିକ୍ରମ ଯାହା ଅନେକାଂଶରେ ଅକାବ୍ୟିକ ବୋଲି କୁହାଯାଇପାରେ।

ଅତି ବାସ୍ତବବାଦୀ ଚେତନା (Surrealism)ତାଙ୍କ କବିତ୍ୱର ଏକ ବିଶିଷ୍ଟ ଦିଗ, ଯାହା ତାଙ୍କ ପୂର୍ବ କିମ୍ବା ତାଙ୍କ ସମୟର ଅନ୍ୟ କବିଙ୍କ ଠାରେ ପରିଲକ୍ଷିତ ହୁଏନା।

ବିନୋଦ ଚନ୍ଦ୍ର ନାୟକଙ୍କ କବିତା ଦୂର ଭୂଗୋଳର କବିତା। ଓଡ଼ିଆ କବିତାକୁ ସେ ଆଞ୍ଚଳିକ କାବ୍ୟଚେତନାର ଚଉହଦୀ ଭିତରୁ ମୁକ୍ତି ଦେଇଛନ୍ତି ଓ ଆନ୍ତର୍ଜାତିକତାର ସନ୍ଧାନ କରିଛନ୍ତି।

ଓଡ଼ିଆ ସାହିତ୍ୟ ଇତିହାସରେ ଦୂର ନିର୍ଜନ ପୃଥିବୀର ଚିତ୍ର ଆଙ୍କିବାରେ ସେ ଯଥାର୍ଥରେ ଏକ ବିରଳ ପ୍ରତିଭା। ରଷୋ କହିଥିଲେ : ''ରୋମାଣ୍ଟିକ ଚେତନାର ରଚ୍ଚ ଗୁଣ ହେଉଛି, ପ୍ରକୃତି କୋଳକୁ ପ୍ରତ୍ୟାବର୍ତ୍ତନ କରିବା। ସେ ଦୃଷ୍ଟିରୁ ବିନୋଦ ଚନ୍ଦ୍ର ନାୟକ ନାରୀ ଓ ପ୍ରକୃତିକୁ ତାଙ୍କ ଭାବନାର କେନ୍ଦ୍ରରେ ରଖିଛନ୍ତି । ପ୍ରକୃତି ସହିତ ନାରୀ ଅତି ଆପେକ୍ଷିକ ଭାବେ ରହିଛି ତାଙ୍କ କବିତାରେ।

ଯେକୌଣସି ବଡ଼ ରୋମାଣ୍ଟିକ କବିଙ୍କ ପରି ବିନୋଦ ଚନ୍ଦ୍ର ଅଧିକ ବିଷାଦବାଦୀ। ତାଙ୍କ କବିତା ସେପାଇଁ ଏତେ ନିବିଡ଼ ଭାବେ ପାଠକକୁ ସ୍ପର୍ଶ କରେ। ସ୍ୱପ୍ନ ପ୍ରବଣତା ସହିତ ତାଙ୍କ ବିଷାଦବାଦୀ ଅନୁଭବ ସଂଶ୍ଳିଷ୍ଟ ହୋଇ ରହିଛି।

ବିନୋଦ ଚନ୍ଦ୍ର ନାୟକ ଉଭୟ ବିସ୍ମୟ ବୋଧ ଓ ସୌନ୍ଦର୍ଯ୍ୟବୋଧକୁ ସମନ୍ୱିତ କରି ତାଙ୍କ କଳ୍ପନାରେ ମୁଖର ହୋଇଛନ୍ତି।

କବି ବିନୋଦ ଚନ୍ଦ୍ର ୟୁରୋପର ରୋମାଣ୍ଟିକ କାବ୍ୟ ଆନ୍ଦୋଳନ ସହିତ ପରିଚିତ ଥିଲେ ଓ ଅନେକାଂଶରେ ତା'ଦ୍ୱାରା ପ୍ରଭାବିତ ହୋଇଥିଲେ ।

କଳ୍ପନା ଶକ୍ତି ହିଁ ରୋମାଣ୍ଟିକ କବିମାନଙ୍କର ବଡ଼ ଶ୍ରୀ ବା ସଂପତ୍ତି । ଯୁକ୍ତି ନୁହେଁ ଆବେଗ ହିଁ ସମସ୍ତଙ୍କୁ ଭାବରେ ଭସାଇ ନିଏ। ରୋମାଣ୍ଟିକ କବିମାନେ ପ୍ରାୟ ସମସ୍ତେ ଏକମତ ଯେ, କଳ୍ପନା ମଧ୍ୟ ଦେଇ ଅନୁଭୂତିର ଦୃଶ୍ୟାତୀତର ସ୍ୱରୂପ ଉଦ୍‌ଘାଟନ କରିବାରେ ସେମାନେ ଆଗ୍ରହୀ।

ଆବୃତ୍ତି ପ୍ରଧାନ କବିତା ରଚନା ଥିଲା କବି ବିନୋଦ ଚନ୍ଦ୍ର ନାୟକଙ୍କ ଆଦର୍ଶ। ପୂର୍ବରୁ ପଦ୍ୟଥିଲା ଅଧିକାଂଶରେ ଗାନ ଯୋଗ୍ୟ। ବ୍ୟକ୍ତିକ ଚେତନାର ଅବାଧ ସ୍ୱାତନ୍ତ୍ର୍ୟ ତାଙ୍କ କବିତାରେ ପରିଦୃଷ୍ଟ।

ତାଙ୍କ ସମୟ ଥିଲା ସେହିପରି। ସମକାଳୀନ ସମସ୍ତେ ରୋମାଣ୍ଟିକ କାବ୍ୟାଦର୍ଶ ଅନୁଯାୟୀ କବିତା ଲେଖୁଥିଲେ। ରୋମାଣ୍ଟିସିଜମ୍ ଥିଲା ସେ ସମୟର କାବ୍ୟ ପ୍ରବୃତ୍ତି।

ବିନୋଦ ନାୟକ ହେଉଛନ୍ତି ଓଡ଼ିଆ ସାହିତ୍ୟର ବହୁଚର୍ଚ୍ଚିତ ରୋମାଣ୍ଟିକ କବି। ସବୁଜ କାବ୍ୟ ଚେତନା ସହିତ ତାଙ୍କ କବିତାଦର୍ଶର କିଛି ସାମଂଜସ୍ୟ ରହିଛି।

ଓଡ଼ିଶାର ଜାନପଦିକ ଚିତ୍ର ତାଙ୍କ କବିତାରେ ଜୀବନ୍ତ ହୋଇପାରିଛି । ତାଙ୍କର ଦୂରତମ ଭୂଗୋଳ ପ୍ରତି ବିଶେଷ ଉନ୍ମୁଖତା ସତ୍ତ୍ୱେ ଓଡ଼ିଶାର ପାରିବାରିକ ଜୀବନ ଓ ତା'ର ଚତୁପାର୍ଶ୍ୱକୁ ଚିତ୍ରଣ କରିବାରେ ସେ ଆପଣାର କୃତିତ୍ୱ ପ୍ରଦର୍ଶନ କରି ପାରିଛନ୍ତି।

ବିନୋଦ ନାୟକଙ୍କ କବିତା ଯଥାର୍ଥରେ ସୁଦୂରର ସଙ୍ଗୀତ ଯାହା ନିକଟରେ ଦୁଇହାତରେ ପାଇବାର ସୀମା ଭିତରେ ସୁଲଭ, ସବୁ ଅତି ମାମୁଲି ଅତି ଦୈନନ୍ଦିନ ଅତି ରଙ୍ଗଛଡ଼ା। ତେଣୁ ଦେଶକାଳ ପାତ୍ରର ସଂକୀର୍ଣ୍ଣ ସୀମାରେଖା ଛାଡ଼ି ବିନୋଦ ନାୟକଙ୍କ କବିତା କରିଛି ନୂତନଜାତି ଓ ନୂତନ ପ୍ରକୃତିର ସନ୍ଧାନ।

କବି ସତ୍ୟ ସ୍ୱପ୍ନ ଭିତରେ ବଞ୍ଚିବାକୁ ଶ୍ରେୟ ମଣିଛନ୍ତି। ବିଫଳତା ସତ୍ତ୍ୱେ ସ୍ୱର୍ଣ୍ଣ ମୃଗ ପଛରେ ଧାଇଁବାର ଆନନ୍ଦ ଅଲଗା ପ୍ରକାରର ବୋଲି ସେ ଉପଲବ୍ଧି କରିଛନ୍ତି।

ସଂସାରର ରୂଢ଼ ବାସ୍ତବତା ତାଙ୍କୁ ଦୁର୍ବହ ଲାଗିଛି। ସେପାଇଁ ସେ ସ୍ୱପ୍ନ ବିଳାସୀ ହୋଇଛନ୍ତି ଓ ଦୂର ନିର୍ଜନ ପୃଥିବୀକୁ ଭାବି ହେବାରେ ଅଶେଷ ଆନନ୍ଦ ଲାଭ କରିଛନ୍ତି।

ସବୁଠି ସୁଫି ଓ ତ୍ରୋବାଡୋର କବିମାନଙ୍କ ପରି ସେ ନାରୀ ସତ୍ତାକୁ ତାଙ୍କ ସ୍ୱପ୍ନ ଓ କଳ୍ପନାର କେନ୍ଦ୍ର କରିଛନ୍ତି। ଅଙ୍ଗୁରକ୍ଷେତ, ଅଫିମର ଫୁଲ କେଉଁ ନୀଳନଦୀର ପାଣି, ମିଶର ଆକାଶରେ ଜହ୍ନ, କେଉଁ ଲବଙ୍ଗ ଦ୍ୱୀପର ସନ୍ଧ୍ୟାକୁ ସେ ଆଙ୍କିଛନ୍ତି ପ୍ରଣୟ ବ୍ୟାକୁଳତାର ଅନୁରୋଧରେ। ତାଙ୍କ ପ୍ରଣୟାତୁର କଳ୍ପନା ବୋଧର ତାହା ତାକୁ ଅତି ନିବିଡ଼ ଲାଗିଛି।

ଅସୀମ ଦୂରତାକୁ ତାଙ୍କ ସ୍ୱପ୍ନ ଓ କବିକଳ୍ପନା ଲଂଘି ଯାଇଛି । ପୃଥିବୀର ବହୁ ବର୍ଣ୍ଣିଳ ସ୍ୱପ୍ନମୟ ଭୂଖଣ୍ଡର ସେ ଅନ୍ୱେଷଣ କରିଛନ୍ତି।

ସ୍ଥାନକାଳ ପାତ୍ର ଉର୍ଦ୍ଧ୍ୱରେ ସେ ପ୍ରେମକୁ ଅସରନ୍ତି ବୋଲି ମନେ କରିଛନ୍ତି। ଏ ପୃଥିବୀରେ ପ୍ରେମ ଓ ପ୍ରେମିକାର ତୁଳନା ନାହିଁ କି ତା'ର କୌଣସି ବିକଳ୍ପ ନାହିଁ । ଅତୁଳନୀୟ ସବୁ ରୂପଛବି ପାଇଁ ତାଙ୍କୁ ପୃଥିବୀର ଦୂରତମ ଭୂଖଣ୍ଡ ରହସ୍ୟମୟ ଲାଗିଛି। ଅଥଚ ସେଇ ରହସ୍ୟମୟ ଲାଗୁଥିବା ଦୂରସ୍ଥ ନଈ ଓ ଜନପଦ ସବୁ ପ୍ରତି ତାଙ୍କ ପ୍ରାଣର ମାତ୍ରାଧିକ ଉନ୍ମୁଖତା ରହିଛି।

ତାଙ୍କ କବିତାରେ ଦୂର ଦିଗବଳୟର କେତେ ନାଁ ଓ ପରିଚୟ ପ୍ରତୀକିତ ହୋଇଛି। ଏହି ବଣ ପାହାଡ଼ ନଈ ଓ ସହରର ନାଁ ସବୁ ତାଙ୍କ କାବ୍ୟିକ ଉଚ୍ଚାରଣର ଏକ ଏକ ଅଂଶ ହୋଇଯାଇଛି। ଏହାଦ୍ୱାରା ଚିରକାଳର ଭୂଗୋଳକୁ ସେ ମହନୀୟ ବୋଲି ବର୍ଣ୍ଣନା କରିଛନ୍ତି।

ବିନୋଦ ଚନ୍ଦ୍ର ନାୟକଙ୍କ କବିତାରେ ନାରୀ ଓ ପ୍ରକୃତି ହିଁ ସର୍ବୋତ୍ତମ ସୁନ୍ଦର ବସ୍ତୁ ଭାବେ ଚିତ୍ରିତ ହୋଇଛି। କୀଟ୍‌ସ୍‌, ଶେଲୀ, ବାଇରନ ୱାର୍ଡ୍‌ସୱାର୍ଥଙ୍କ ପରି ମହାନ୍ ରୋମାଣ୍ଟିକ କବି ମାନଙ୍କ ଚେତନାରେ ଯାହା କେନ୍ଦ୍ର ଥିଲା। ବିନୋଦ ନାୟକଙ୍କ ଭାବ ଚେତନାରେ ଅବିକଳ ସେହି ବିଷୟ ସବୁହିଁ ମୁଖ୍ୟ ହୋଇଛି।

*'ସେଲିମର ସ୍ୱପ୍ନ', 'ସୁମେରୁରେ ସନ୍ଧ୍ୟା'* ଆଦି କବିତା ପ୍ରେମର ବ୍ୟାକୁଳତାକୁ ଉଦ୍ଭାସିତ କରିଛି ଯାହା ତାଙ୍କ କାବ୍ୟ ଚେତନାର ଗୋଟେ ବିଶିଷ୍ଟ ଦିଗ। ରୋମାଣ୍ଟିକ କବିତା ପାଠକର ରସଚେତନାକୁ ଅଧିକ ସ୍ପର୍ଶ କରିବାର କାରଣ ହେଉଛି ଏହି ପ୍ରେମ ପ୍ରସଙ୍ଗ।

ସ୍ୱୈରବାଦୀ କାବ୍ୟ ଯୁଗର ଡକ୍ଟରମାୟାଧର ମାନସିଂହକୁ ଛାଡ଼ିଦେଲେ ପ୍ରେମ ଚିତ୍ର ଆଙ୍କିବାରେ କବି ବିନୋଦ ନାୟକଙ୍କ ସହିତ ତାଙ୍କ ସମୟର ଆଉ କେହି ଓଡ଼ିଆ କବି ତୁଳନୀୟ ନୁହଁନ୍ତି।

ବର୍ଷା, ମଉସୁମ, ଫୁଲ, ଫଗୁଣ, ରାତି, ନଦୀ, ହ୍ରଦ, ସମୁଦ୍ର ଆକାଶ, ପକ୍ଷୀର ଗୀତ, କେତେ ଫସଲର ନିଦୁଆଳି କ୍ଷେତ, କେତେ ଅଭିସାରିଣୀ କିନ୍ତୁ ବିନୋଦ ଚନ୍ଦ୍ର ନାୟକଙ୍କ କବିତାରେ ଚିତ୍ରିତ ହୋଇଛି, ଯାହା ପାଠକର ଆଦିମ ଅନୁଭବକୁ କେତେ ଭାବରେ ଆର୍ଦ୍ର କରିଦିଏ।

ଓଡ଼ିଆ ସାହିତ୍ୟ ଜଗତରେ ତାଙ୍କୁ ବେଦୁଇନ ଦେଶର ବୁଲବୁଲ ବୋଲି କୁହାଯାଏ। ବିନୋଦ ଚନ୍ଦ୍ର ନାୟକ ହେଉଛନ୍ତି ଓଡ଼ିଆ ସାହିତ୍ୟର ଜଣେ ବହୁଚର୍ଚ୍ଚିତ ରୋମାଣ୍ଟିକ କବି ବ୍ୟକ୍ତିତ୍ୱ।

ଆଧୁନିକ ଓଡ଼ିଆ କବିମାନେ ଏବେବି ବହୁଭାବରେ ବୈଦେଶିକ ମାନଙ୍କ ଦ୍ୱାରା ପ୍ରଭାବିତ। କବିବର ରାଧାନାଥ ରାୟ ଥିଲେ ବିଦେଶୀ ସାହିତ୍ୟରୁ ଆରୋହଣ କରିବାରେ ପ୍ରଥମ ଓଡ଼ିଆ କବି। ବିନୋଦ ଚନ୍ଦ୍ର ନାୟକ କିନ୍ତୁ ବିଦେଶୀ ସାହିତ୍ୟରୁ ଯେତେ ଆରୋହଣ କରି ନାହାନ୍ତି ସେତେ ଦୂର ଭୂଗୋଳ ପ୍ରତି ଆକୃଷ୍ଟ ହୋଇଛନ୍ତି ଓ ତା'ର ବିପୁଳ ଚିତ୍ର ଆଙ୍କିଛନ୍ତି।

ନରନାରୀଙ୍କ ପ୍ରେମ ଓ ତା'ର ବିରହ ମିଳନକୁ ଏତେ କାବ୍ୟିକ କରି ଚିତ୍ରଣ କରିବାରେ ସେ ଅତି ଅଗ୍ରଣୀ। ତାଙ୍କ କବିତା ଠାରୁ ଯେମିତି ସେ ଦୃଷ୍ଟିରୁ ମାନବ ପ୍ରେମର ଗୋଟେ ଗୋଟେ ଫୁଲ।

ଇଂରାଜୀ ସାହିତ୍ୟ ପଢ଼ିଥିବା କାରଣରୁ ତାଙ୍କ ସାହିତ୍ୟର ଭାବ ଭାଷା ବଦଳିଛି। ସେତେ ବେଶୀ ପାରଂପରିକ ଲାଗେନି ତାଙ୍କ କବିତା ସେପାଇଁ। ଶିକ୍ଷା ବିଭାଗରେ ସେ ଜୀବନର ବହୁ ବର୍ଷ ଅତିବାହିତ କରିଛନ୍ତି। ପ୍ରାଥମିକ ଜୀବନରୁ ସେ କବିତାକୁ ଭଲ ପାଇଛନ୍ତି ଓ ଅଷ୍ଟମ ଶ୍ରେଣୀର ଛାତ୍ର ଥିଲାବେଳେ ସେ କବିତା ଲେଖା ଆରମ୍ଭ କରିଛନ୍ତି।

ସେ ପ୍ରେମ ବିରହ, ସମ୍ଭୋଗ ତଥା ପ୍ରଣୟର ସ୍ମୃତିକୁ ଯେପରି ରୂପାୟିତ କରିଛନ୍ତି ସେହିପରି ପ୍ରକୃତିକୁ ସେ ଅତି ଜୀବନ୍ତ କରି ଚିତ୍ରଣ କରିଛନ୍ତି। ରୂପ ରସ ଗନ୍ଧର ସେ ବର୍ଣ୍ଣାଢ଼୍ୟ ଚିତ୍ର ଆଙ୍କିଛନ୍ତି। ଯେପରି ନାରୀ ସେହିପରି ପ୍ରକୃତି ତାଙ୍କ କବିତାର କେନ୍ଦ୍ର ହୋଇଛି।

## କବିଙ୍କ ଜୀବନୀ

ବିଶିଷ୍ଟ ସ୍ୱୈରବାଦୀ କବି ଡଃ ବିନୋଦ ଚନ୍ଦ୍ର ନାୟକଙ୍କର ପ୍ରତିଷ୍ଠା ବହୁମୁଖୀ ଥିଲା। ସେ ଥିଲେ ଏକାଧାରରେ ଜଣେ କବି, ସାମଲୋଚକ ଓ ଜଣେ ସୁଧୀସମର୍ଥକ ଅଧାପକ।

ସେ ପାଟଣା ବିଶ୍ୱବିଦ୍ୟାଳୟରୁ ଯଥାକ୍ରମେ ଇଂରାଜୀ ଓ ଓଡ଼ିଆରେ ସ୍ନାତକୋତ୍ତର ଉପାଧି ଲାଭ କରିଥିଲେ। ସମ୍ବଲପୁର ବିଶ୍ୱବିଦ୍ୟାଳୟ ତାଙ୍କ ସାରସ୍ୱତ୍ୱ ବ୍ୟକ୍ତିତ୍ୱକୁ ସମ୍ମାନିତ କରିବାକୁ ଯାଇ ତାଙ୍କୁ ସମ୍ମାନ ସୂଚକ ଡିଲିଟ୍ ଉପାଧି ପ୍ରଦାନ କରିଥିଲେ। ଓଡ଼ିଶାର ତରୁଣ ପ୍ରବୀଣ ନିର୍ବିଶେଷରେ ସମସ୍ତ ସାହିତ୍ୟିକ ତାଙ୍କ କବିତା ସହିତ ନିବିଡ଼ ଭାବରେ ପରିଚିତ ଥିଲେ।

ବିଦ୍ୟାଳୟ, ମହାବିଦ୍ୟାଳୟ, ତଥା ବିଶ୍ୱବିଦ୍ୟାଳୟ ଶ୍ରେଣୀମାନଙ୍କରେ ତାଙ୍କ କବିତା ପାଠ୍ୟରୂପେ ଦୀର୍ଘ ବର୍ଷ ଧରି ପ୍ରଚଳିତ ହୋଇ ଆସୁଛି। *'ଗ୍ରାମପଥ'* କବିତା ବିନୋଦ ଚନ୍ଦ୍ର ନାୟକଙ୍କ ଏକ ଅତି ଲୋକପ୍ରିୟ କବିତା, ଯାହା ତାଙ୍କୁ ସମସ୍ତଙ୍କ ନିକଟରେ ପରିଚିତ କରାଇଛି।

ଓଡ଼ିଶାର ବଣ ପାହାଡ଼ ଘେରା ସୁନ୍ଦର ଗଡ଼ ଜିଲ୍ଲା ଅନ୍ତର୍ଗତ ତେଲିପାଳି ଗ୍ରାମରେ ଶ୍ରୀ ବିନୋଦଚନ୍ଦ୍ର ନାୟକଙ୍କ ଜନ୍ମ ତେଣୁ ଦୂର ପ୍ରାନ୍ତୀୟ ପଲ୍ଲୀରେ ସେ ତାଙ୍କର ମଧୁର ଶୈଶବ ବିତାଇଥିଲେ। ଯାହାର ପ୍ରତିଫଳନ ତାଙ୍କ କବିତାରେ ପରିଲକ୍ଷିତ। ଉଲ୍ଲିଖିତ *'ଗ୍ରାମପଥ'* କବିତାଟି ହିଁ ତା'ର ସର୍ବୋତ୍ତମ ନମୂନା।

ତାଙ୍କର ବୃତ୍ତିଗତ ଜୀବନ ମଧ ବଡ଼ ବ୍ୟାପକ । ୧୯୫୦ ଖ୍ରୀଷ୍ଟାବ୍ଦରୁ ଅର୍ଦ୍ଧଶତାବ୍ଦୀ ଉର୍ଦ୍ଧ୍ୱକାଳ ଧରି ସେ ଓଡ଼ିଶାର ବିଦ୍ୟାଳୟ, ମହାବିଦ୍ୟାଳୟ ଆଦି ବହୁ ଶିକ୍ଷାନୁଷ୍ଠାନରେ ଅଧାପନା କରିଛନ୍ତି। ଏତଦ୍‌ଭିନ୍ନ ସେ ବିଭିନ୍ନ ମହାବିଦ୍ୟାଳୟରେ ଅଧକ୍ଷ ଭାବେ ମଧ ବହୁବର୍ଷ ଧରି କାର୍ଯ୍ୟ ନିର୍ବାହ କରିଛନ୍ତି।

ସେ ଥିଲେ ଓଡ଼ିଶା ସାହିତ୍ୟ ଏକାଡେମୀର ସମ୍ପାଦକ ଓ ଉପସଭାପତି। ଦୀର୍ଘଦିନ ଧରି ସେ ନାନା ପଦପଦବୀରେ ଥାଇ ଓଡ଼ିଶା ସାହିତ୍ୟ ଏକାଡେମୀ ସହିତ ସଂପୃକ୍ତ ଥିଲେ, ତଥା ଓଡ଼ିଆ ସାହିତ୍ୟର ପ୍ରଚାର ପ୍ରସାର ପାଇଁ କାର୍ଯ୍ୟ କରିଥିଲେ।

*ସରୀସୃପ* କବିତା ଗ୍ରନ୍ଥ ପାଇଁ କବି ଶ୍ରୀନାୟକ ସମ୍ମାନସ୍ପଦ କେନ୍ଦ୍ର ସାହିତ୍ୟ

ଏକାଡେମୀ ପୁରସ୍କାର ଲାଭ କରିଛନ୍ତି। ଓଡ଼ିଶାର ଆକାଶବାଣୀ, ଦୂରଦର୍ଶନ ତଥା ବହୁ କ୍ଷୁଦ୍ର ବୃହତ୍ ଅନୁଷ୍ଠାନ ସହିତ ନାନା ଭାବରେ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା।

ସେ ତାଙ୍କର ସାରସ୍ୱତ ପ୍ରତିଷ୍ଠା ପାଇଁ ପ୍ରଜାତନ୍ତ୍ର ପ୍ରଚାର ସମିତି ଆନୁକୁଲ୍ୟରେ ବିଷୁବ ପୁରସ୍କାର, ସମ୍ବଲପୁର ବିଶ୍ୱବିଦ୍ୟାଳୟ ତରଫରୁ ମର୍ଯ୍ୟାଦାବନ୍ତ ଭାରତ ଚନ୍ଦ୍ର ନାୟକ ସ୍ମୃତି ପୁରସ୍କାର, ଭଞ୍ଜ ପ୍ରଦୀପ ସମ୍ମାନ ତଥା ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ସର୍ବୋଚ୍ଚ ଅତିବଡ଼ୀ ସମ୍ମାନ’ ଲାଭ କରିଛନ୍ତି। ବହୁମର୍ଯ୍ୟାଦାରେ ବିଭୂଷିତ ହୋଇଥିଲେ ହେଁ କବି ବିନୋଦ ଚନ୍ଦ୍ର ନାୟକ ନିରନ୍ତର ସାଧନା ରତ ଥିଲେ।

ଜଣେ ସୁପ୍ରତିଷ୍ଠିତ କବି ଓ ପ୍ରତିଭାଧର ସାହିତ୍ୟିକ ଶିକ୍ଷାବିତ୍ ତଥା ବୁଦ୍ଧିବାଦୀ ଭାବେ ସେ ଓଡ଼ିଶାର ଜନଜୀବନକୁ ଅର୍ଦ୍ଧଶତାବ୍ଦୀରୁ ଅଧିକ କାଳଧରି ଅନୁପ୍ରାଣୀତ କରି ଆସିଥିଲେ।

ଆଧୁନିକ ସହରଠାରୁ କିଛି ଦୂରରେ ଇଛାବତୀ ନଦୀ କୂଳରେ ତେଲିପାଲି ଗାଁରେ ୧୯୧୯ ମସିହା ସେପ୍ଟେମ୍ବର ୨ ତାରିଖରେ କବି ବିନୋଦ ଚନ୍ଦ୍ର ନାୟକଙ୍କ ଜନ୍ମ। ତାଙ୍କର ପିତାଙ୍କର ନାମ ଥିଲା ନାରାୟଣ ଗଉଁତିଆ। ପିତାଙ୍କ ଦ୍ୱିତୀୟା ପତ୍ନୀ କସ୍ତୁରୀ ଦେବୀ ଥିଲେ କବିଙ୍କ ମାଆ। ସେ ଅଗିରିଆ ପରିବାରରେ ଜନ୍ମ ହୋଇଥିଲେ। ଏକ ବହୁକୁଟୁମ୍ବୀ ଯୌଥ ପରିବାରରେ ଜନ୍ମ ହୋଇଥିଲେ। ଓଡ଼ିଶାର ପଶ୍ଚିମାଞ୍ଚଳର ନିକଟ ଗ୍ରାମ୍ୟ ସଂସ୍କୃତି ଭିତରେ ସେ ଲାଳିତ ପାଳିତ ହୋଇଥିଲେ। କବି ଝାଡ଼ ଜଙ୍ଗଲ ପରିବେଷ୍ଟିତ ତାଙ୍କ ମାମୁଁ ଘରେ ଭୂମିଷ୍ଠ ହୋଇଥିଲେ।

ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ ସୁଖବୋଧ ବହିର ବିନୋଦ ନାମେ ଏକ୍‌ଟା ସୁବୋଧ ବାଳକ ଛିଲୋ ବାକ୍ୟଟିରୁ କବିଙ୍କ ନାମ କରଣ ହୋଇଥିଲା। ୧୯୨୯ରେ ଗାଁର ପ୍ରାଥମିକ ଶିକ୍ଷା ସମାପ୍ତ ପରେ ତାଙ୍କ ନାମ ସୁନ୍ଦରଗଡ଼ର ବାଳକ ହାଇସ୍କୁଲ୍‌ରେ ଲେଖା ହୋଇଥିଲା। ୧୯୩୬ ମସିହାରେ କବି ମେଟ୍ରିକ୍ ପାସ୍ କଲାପରେ ଉଚ୍ଚ ଶିକ୍ଷା ପାଇଁ ସେ ରେଭେନ୍‌ସା କଲେଜରେ ପହଞ୍ଚି ଇଂରାଜୀ ସମ୍ମାନ ନେଇ ପଢ଼ିଲେ । ୧୯୩୯ରେ ସେ ରେଭେନ୍‌ସା କଲେଜରୁ ଉର୍ତ୍ତୀର୍ଣ୍ଣ ହୋଇ ପାଟଣା ବିଶ୍ୱବିଦ୍ୟାଳୟରେ ଇଂରାଜୀରେ ଏମ୍.ଏ. ପଢ଼ିଲେ । ୧୯୪୩ରେ ସେ ପାଟଣାରୁ ଇଂରାଜୀରେ ଏମ୍.ଏ ପାସ୍ କରି ପୁଣି ଆଇନ ପଢ଼ିବା ପାଇଁ ରେଭେନ୍‌ସାକୁ ଫେରି ଆସିଲେ । ୧୯୪୪ ମସିହାରେ ସେ ସରକାରୀ ଚାକିରୀରେ ନିଯୁକ୍ତି ପାଇବାରୁ ଆଇନ ପଢ଼ା ଛାଡ଼ି ଦେଇ ଘରୋଇ ଭାବରେ ଓଡ଼ିଆ ସାହିତ୍ୟରେ ଏମ୍.ଏ.ପରୀକ୍ଷା ଦେଇ ୧୯୫୦ରେ ଏମ୍.ଏ. ପାସ୍ କଲେ।

ଯେତେବେଳେ ସେ ପାଟଣା ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଶ୍ରେଣୀରେ

ଛାତ୍ରଥିଲେ ସେତେବେଳେ ତାଙ୍କର ଯାଜ୍ଞସେନୀଙ୍କ ସହିତ ବିବାହ ଅନୁଷ୍ଠିତ ହୋଇଥିଲା। ଅତି ପିଲାଟି ଦିନରୁ କବି ବିନୋଦ ଚନ୍ଦ୍ର ନାୟକ ଅତ୍ୟନ୍ତ ଜ୍ଞାନ ପିପାସୁ ଥିଲେ। ତାଙ୍କ ନିଜର ପ୍ରତିଭା ଥିଲା ଓ ସେ ସୁନ୍ଦରଗଡ଼ ପରି ଜିଲ୍ଲାର ସୁନ୍ଦର ପ୍ରାକୃତିକ ପରିବେଶ ଦ୍ୱାରା ପ୍ରଭାବିତ ମଧ ହୋଇଥିଲେ।

କବି ଯେତେବେଳେ ରେଭେନ୍‌ସା କଲେଜର ଇଷ୍ଟ ହଷ୍ଟେଲରେ ରହି ପାଠ ପଢୁଥିଲେ, ସେତେବେଳେ ତାଙ୍କ ସାଙ୍ଗରେ ଥିଲେ 'ସମୁଦ୍ର ସ୍ନାନ'ର ରଚୟିତା ଗୁରୁପ୍ରସାଦ ମହାନ୍ତି। ସେହି ସମୟରେ ଓଡ଼ିଶାର ବିଶିଷ୍ଟ କଥାଶିଳ୍ପୀ ସୁରେନ୍ଦ୍ରମହାନ୍ତି, ରାଜକିଶୋର ରାୟ ଓ କବି ରଘୁନାଥ ଦାସ ପ୍ରମୁଖଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ କବି ଆସିଥିଲେ। ନାନା ଉତ୍‌ଥାନ ପତନ ଭିତରେ କବି ତାଙ୍କର ଚାକିରୀ ଜୀବନ ଅତିବାହିତ କରିଥିଲେ। ୧୯୬୩ରେ ସୁନ୍ଦରଗଡ଼ କଲେଜ, ୧୯୬୬ରେ ସମ୍ବଲପୁର ଗଙ୍ଗାଧର ମେହେର ମହାବିଦ୍ୟାଳୟରେ ସେ ଯଥାକ୍ରମେ ଓଡ଼ିଆ ଓ ଇଂରାଜୀରେ ଅଧାପକ ଥିଲେ।

ଶେଷରେ ୧୯୬୮ରେ ସେ ଓଡ଼ିଶା ସାହିତ୍ୟ ଓ ସଂଗୀତ ନାଟକ ଲଳିତ କଳା ଏକାଡେମୀର ସମ୍ପାଦକ ଭାବେ ଅବସ୍ଥାପିତ ହୋଇଥିଲେ। ଦୀର୍ଘବର୍ଷ ଧରି ସେ ପୁଣି ଓଡ଼ିଶା ସାହିତ୍ୟ ଏକାଡେମୀ ସାଧାରଣ ସଂପାଦକ ଏବଂ ପରେ ଉପସଭାପତି ପଦ ମଣ୍ଡନ କରିଥିଲେ।

ସାମନ୍ତୀୟ ବିଳାସ କବିଙ୍କ କଳ୍ପନା ପ୍ରବଣତାକୁ ଅନେକାଂଶରେ ପ୍ରଭାବିତ କରିଥିଲା।

'ମୁଁ କାହିଁକି ଲେଖେ' ଶୀର୍ଷକ ଏକ ଆତ୍ମଜୀବନୀ ମୂଳକ ଲେଖାରେ କବି ଲେଖିଛନ୍ତି: ''ପରମ୍ପରା ପୀଡ଼ିତ ଅବକ୍ଷୟ ଉନ୍ମୁଖ ବୁନିୟାଦୀ ଚାଲର ଏକ ଗୌନ୍ତିଆ ପରିବାରରେ ମୋର ଜନ୍ମ। ବର୍ଷ ସାରା ନୃତ୍ୟଗୀତ ପୁରାଣପାଠ ଓ ଅତିଥି ଅଭ୍ୟାଗତଙ୍କ ସମାରୋହରେ ସମୟ ଅତିବାହିତ ହୁଏ ମୋର ପିତୃକୁଳ ପୁରୁଷ ଗଣଙ୍କର। ପୁରୋହିତ, ପଣ୍ଡା, ପଣ୍ଡିତ ଗାୟକମାନଙ୍କୁ ପାଟ୍‌ଯୋଡ଼, ସୁନା କୁଣ୍ଡଳ, ବିଦାକି ଦ୍ୱାରା ସମ୍ମାନିତ କରାଯାଏ। ଜଣେ ଆଶୁକବିଙ୍କୁ ଏତଦ୍‌ସହ ଏକ ଅଶ୍ୱ ମଧ ପ୍ରଦାନ କରାଯାଇଥିବାର ମୁଁ ଦେଖିଛି।''

କବି ବିନୋଦ ଚନ୍ଦ୍ର ମାତ୍ର ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ତୃତୀୟ ଶ୍ରେଣୀର ଛାତ୍ର ଥିଲାବେଳେ ତାଙ୍କ ଜୀବନର ପ୍ରଥମ ରଚନା କରିଥିଲେ ଏହି 'ଗଣେଶ ବନ୍ଦନା':

'ଜୟ ଜୟ ହେ ଗଣେଶ ଗୁରୁ ଆପଙ୍କ ବିନାଶ
ଶ୍ରୀ ଅଙ୍ଗେ ରକ୍ତ ବସନ ପରିଧାନ
ରକ୍ତ ଚନ୍ଦନେ ଭୂଷଣ ରକ୍ତ ପଦ୍ମେ ସମାସୀନ

ଇନ୍ଦୁର ବାହନ ତବ ଗଜ ବଦନ
ବାରେ କୃପା କର ହେ ନାଥ
ଜ୍ଞାନହୀନ ଛାତ୍ର ମୁହିଁ ହେଲି ଅନାଥ।'

ତାଙ୍କ ଅଜା ମୁକୁନ୍ଦରାମ ଛାନ୍ଦ ଚଉତିଶା ଗାଇବାରେ ଓସ୍ତାଦ ଥିଲେ। ସେ ମଥୁରାମଙ୍ଗଳ ପରି ଏକ ମୁକ୍ତ ମଞ୍ଚ କାବ୍ୟ ନାଟକ ଅଭିନୀତ କରାଉଥିଲେ। ତାଙ୍କ ଅଜା ମୁକୁନ୍ଦ ନାଥ 'ଫୁଲତୋଳା' ନାମକ ଏକ ଗୀତି କବିତା ରଚନା କରି ପୁଅ ଝିଅଙ୍କୁ ଶୁଣାଇଥିଲେ ।

ଅଜା ମୁକୁନ୍ଦରାମଙ୍କ ଗୀତିକବିତାର ଉପମା, ରୂପକ, କଳ୍ପନା ବିଳାସ ତଥା ଭାଷା ଶୈଳୀ ଦ୍ୱାରା ବିନୋଦ ଚନ୍ଦ୍ର ନାୟକ ବିଶେଷ ରୂପେ ପ୍ରଭାବିତ ହୋଇଥିଲେ। ତାଙ୍କ କବିତା ରଚନାର ଆଦ୍ୟ ପ୍ରେରଣା ଦାତ୍ରୀ ତାଙ୍କ ମାଆ କସ୍ତୁରୀ ଦେବୀ ଥିଲେ ବୋଲି କବି ସ୍ୱୀକାର କରିଛନ୍ତି।

ସେ ସାର୍ଥକ ଚିତ୍ର କଳ୍ପ ପ୍ରୟୋଗରେ ଅଧିକ ଆଗ୍ରାହୀ ଥିଲେ ବୋଲି ମଧ୍ୟ ସୂଚନା ଦେଇଛନ୍ତି। କବିଙ୍କ ଧନବନ୍ତ ପିତା କିନ୍ତୁ କବିତା ରଚନାକୁ ଅତି ନ୍ୟୁନ ଚକ୍ଷୁରେ ଦେଖୁଥିଲେ। କବିତା ରଚନାକୁ ଭାଗ୍ୟହୀନ ଆଳସ୍ୟ ପରାୟଣ ବ୍ୟକ୍ତିଙ୍କ ବୃତ୍ତି ବୋଲି ସେ ମନେ କରୁଥିଲେ।

କବି ସୁନ୍ଦରଗଡ଼ ଇଂଲିଶ ବାଳକ ସ୍କୁଲରେ ଯେତେବେଳେ ଯୋଗଦେଲେ ସେତେବେଳେ କାଳିଦାସଙ୍କ ସରସ୍ୱତୀ ବନ୍ଦନା ଅନୁଯାୟୀ ଏକ ଗୀତିକବିତା ରଚନା କରିବା ପାଇଁ ଚେଷ୍ଟା କରିଥିଲେ। ତାଙ୍କ ସମ୍ମୁଖରେ ଆଦର୍ଶ ଥିଲା କାଳିଦାସଙ୍କ ରଚିତ ଏହି ବନ୍ଦନାଟି

କଜ୍ଜ୍ୱଳ ପୂରିତ ଲୋଚନ ଭାଲେ।
ସ୍ତନଯୁଗ ଶୋଭିତ ମୁକୁତା ହାରେ।
ବୀଣା, ପୁସ୍ତକ ରଂଜିତ ହସ୍ତେ।
ଭଗବତୀ ଭାରତୀ ଦେବୀ ନମସ୍ତେ।

ସପ୍ତମ ଶ୍ରେଣୀରେ ଛାତ୍ର ଥିଲାବେଳେ କୁନ୍ତଳାକୁମାରୀଙ୍କ 'ସ୍ଫୁଲିଙ୍ଗ' ଦ୍ୱାରା ପ୍ରଭାବିତ ହୋଇ *'ନୀହାର କଣିକା'* ଶୀର୍ଷକ କବିତା ରଚନା କରିଥିଲେ ଯାହା। ବ୍ରହ୍ମପୁରରୁ ପ୍ରକାଶିତ 'ନବୀନ' ପତ୍ରିକାରେ ପ୍ରକାଶିତ ହୋଇ ଥିଲା। ସେହି 'ନୀହାର କଣିକା' କବିତାରୁ କିଛି ଅଂଶ ଏଠାରେ ଉଦ୍ଧାର କରାଯାଇପାରେ।

'ନୀହାର କଣିକା
କ୍ଷୀଣ କଣିକା ମୁଁ କ୍ଷଣେ ମିଳାଇ ଯାଏ
ଶୂନ୍ୟ ଗଗନ ସାଙ୍ଗେ

ହେମ ଛବିରବି ହେମକର ଛବି
ପରଶେ ଯେବେ ଗୋ ଅଙ୍ଗେ।
ନିର୍ଜନ ତଟିନୀ ନିର୍ଝର ନିର୍ମଳେ
ବହିଯାଏ ଯେବେ ତରୁଲତା ମୂଳେ
ଦେଖି ସେହି ଛବି
ଗାଇ ଯାଏ କବି
ଭାବୁକ ଭାବନା ପଡ଼ଇ ଉଚ୍ଛୁଳି
ପ୍ରକୃତି ରସିକ ନିଏ କରତାଳି
ମତେ କେବେ ଅନାଇବ ଅନାଥିନୀ ଏକାଗୋ
କରମ ମୋ ହୀନ ମୋ ନାଁ ନୀହାର କଣିକା ଗୋ ।

ପ୍ରଗତିବାଦୀ ଚେତନାର କବିତା ଲେଖୁଥିବା କବି ସଚ୍ଚି ରାଉତରାୟଙ୍କ ଦ୍ୱାରା ବିନୋଦ ଚନ୍ଦ୍ର ନାୟକ ପ୍ରଭାବିତ ହୋଇଛନ୍ତି ବୋଲି ତାଙ୍କ ସ୍ମୃତିକଥାରେ ଉଲ୍ଲେଖ କରିଛନ୍ତି। ୧୯୩୨ଖ୍ରୀ.ରେ ପଣ୍ଡିତ ଜବାହାର ଲାଲ ନେହେରୁଙ୍କ ସଂପାଦନାରେ ଦିଲ୍ଲୀରୁ ପ୍ରକାଶିତ ଇଂରାଜୀ ପତ୍ରିକାରେ ସଚ୍ଚିଦାନନ୍ଦ ରାଉତ ରାୟଙ୍କର 'My Motherland' ଏବଂ ବିନୋଦ ଚନ୍ଦ୍ର ନାୟକଙ୍କର 'The Girl and the Cuckoo' କବିତା ଏକା ସାଙ୍ଗରେ ପ୍ରକାଶିତ ହୋଇଥିଲା।

ଭଗବାନ ପଡ଼ିହାରୀଙ୍କ କବିତା ଛନ୍ଦ ଦୃଷ୍ଟିରୁ କବି ବିନୋଦ ଚନ୍ଦ୍ର ନାୟକଙ୍କୁ ପ୍ରୋତ୍ସାହିତ କରିଥିଲା । ତ୍ରୁଟିହୀନ ଛନ୍ଦରେ ଲେଖିବା ପାଇଁ ସେ ତାଙ୍କ ପ୍ରାଥମିକ କବି ଜୀବନରୁ ପ୍ରୟାସ କରିଥିଲେ।

ସେ ଇଂରାଜୀ ସାହିତ୍ୟର ଛାତ୍ର ଭାବରେ ୟୁରୋପୀୟ ଭାବେଚେତନାକୁ ନାନା ଭାବରେ ଗ୍ରହଣ କରିଥିଲେ। ତାଙ୍କ ଛନ୍ଦ ଯୋଜନା ଓଡ଼ିଆ କବିତା ଧାରାରେ ନୂଆ ଆଲୋଡ଼ନ ସୃଷ୍ଟି କରିଥିଲା। Current Indian Literature ମନ୍ତବ୍ୟ ଦେଇ କହିଥିଲା 'Binod Chandra Nayak an avant garde is incessantly experimenting on verse pattern'

କବି ସଚ୍ଚି ରାଉତରାୟ ଯଦିଓ ବିନୋଦ ଚନ୍ଦ୍ର ନାୟକଙ୍କର ଦିଗ୍ ଦର୍ଶକ ଥିଲେ ତଥାପି ସଚ୍ଚିରାଉତରାୟଙ୍କ ପ୍ରଗତିବାଦୀ ଭାବଚେତନାକୁ ବିନୋଦ ନାୟକ ଗ୍ରହଣ କରି ପାରିନଥିଲେ। ତାଙ୍କ ସ୍ୱୈରବାଦୀ ଉନ୍ମୁଖତାକୁ ବେଶୀ ଉତ୍ସାହିତ କରିଛନ୍ତି ସୁରେନ୍ଦ୍ର ମହାନ୍ତି ଓ ଗୁରୁପ୍ରସାଦ ମହାନ୍ତି।

ଡାରଉଇନ୍‌ଙ୍କ ବିବର୍ତ୍ତନବାଦ, ଫ୍ରଏଡ୍‌ଙ୍କ ଅବଚେତନ, ଆରିଷ୍ଟଟଲଙ୍କ କନସେପ୍ଟ

'ଅଫ୍ ଆର୍ଟ ବିନୋଦ ନାୟକଙ୍କୁ ବେଶୀ ଆକୃଷ୍ଟ କରିଥିଲା । ଯାହା ନାନା ଭାବରେ ତାଙ୍କ କବିତାରେ ପ୍ରତିବନ୍ଧ ଅଭିବ୍ୟକ୍ତ ଲାଭ କରିଛି।

ସେ ତାଙ୍କ କବିତାରେ କିଛି ପରୀକ୍ଷା ନିରୀକ୍ଷା କରିଛନ୍ତି ଅବଶ୍ୟ। ଓଡ଼ିଆ କବିତାର ଆଙ୍ଗିକ ଓ ଆତ୍ମିକରେ କ'ଣ ପରିବର୍ତ୍ତନ ମାନ ଘଟୁଛି ସେ ବିଷୟରେ କବି ବେଶ୍ ସଚେତନ ଥିଲେ। ସହକାର ପତ୍ରିକାରେ ସେ 'ଆର୍ଟ ଓ ସୃଷ୍ଟି' ଶୀର୍ଷକ ଲେଖିଥିଲେ। ସେ ସମୟର ଦୁଇଜଣ ସୁପ୍ରିତିଷ୍ଠିତ ଓଡ଼ିଆ କବି ବିନୋଦ ନାୟକଙ୍କୁ ସେମାନଙ୍କର ପ୍ରତିସ୍ପର୍ଦ୍ଧୀ ବୋଲି ମନେକରିଥିଲେ। ମାୟାଧର ମାନସିଂହ ବିନୋଦ ନାୟକଙ୍କୁ ବିଦେଶୀୟ (Exotic) ବୋଲି କହୁଥିଲା ବେଳେ ସଚ୍ଚି ରାଉତରାୟ ତାଙ୍କୁ ପଳାୟନପନ୍ଥୀ ବୋଲି ଆକ୍ଷେପ କରିଛନ୍ତି ।

କବି ବିନୋଦ ଚନ୍ଦ୍ର ନାୟକ ତାଙ୍କର ଉଚ୍ଚକୋଟୀର ରୋମାଣ୍ଟିକ କବିତା ଯୋଗୁଁ ବହୁ ପ୍ରବୀଣ ସାରସ୍ୱତ ପୁରୁଷଙ୍କ ଶ୍ରଦ୍ଧା ଓ ସମ୍ମାନ ଲାଭ କରି ପାରିଥିଲେ। ତାଙ୍କର ସେହି ଶୁଭ ଚିନ୍ତକ ମାନଙ୍କ ମଧ୍ୟରେ ଥିଲେ ଔପନ୍ୟାସିକ ଗୋପୀନାଥ ମହାନ୍ତି, ଗାଳ୍ପିକ ରାଜକିଶୋର ପଟ୍ଟନାୟକ, ରାଜକିଶୋର ରାୟ, ଜୟପୁରର ମହାରାଜା ବିକ୍ରମ ଦେବ ବର୍ମା, ବିଶିଷ୍ଟ ବଙ୍ଗୀୟ କବି ପ୍ରେମେନ୍ଦ୍ର ମିତ୍ର, ଡକ୍ଟର ସୁନୀତି କୁମାର ଚଟ୍ଟୋପାଧ୍ୟାୟ ଓ ନରେଶ ମେହେଟ୍ଟା ।

ଦୂର ପ୍ରାନ୍ତୀୟ ପଲ୍ଲୀରେ ଜନ୍ମ ଗ୍ରହଣ କରିଥିଲେ ହେଁ ସେ ଓଡ଼ିଶା ପ୍ରଦେଶର ସାରସ୍ୱତ ଜଗତରେ ଆପଣାର ସ୍ଥାନ ବାଛି ନେଇଛନ୍ତି, ତଥା ତରୁଣ ପ୍ରବୀଣ ନିର୍ବିଶେଷରେ ଅନେକଙ୍କର ପ୍ରିୟଭାଜନ ହୋଇଛନ୍ତି।

# ସୃଷ୍ଟିର ସମ୍ଭାର

କବି ବିନୋଦ ନାୟକ ଥିଲେ ଏକାଧାରରେ ଜଣେ କବି ଓ ସମାଲୋଚକ । ଥିଲେ ଜଣେ ସୁଧୀ ଓ ସମର୍ଥ ଅଧ୍ୟାପକ । ଉଭୟ ଇଂରାଜୀ ଓ ଓଡ଼ିଆର ଛାତ୍ର ଭାବେ ସେ ପ୍ରାଚ୍ୟ ପାଶ୍ଚାତ୍ୟ ସାହିତ୍ୟ ଅଧ୍ୟୟନର ସୁଯୋଗ ପାଇଥିଲେ। କବି ରବୀନ୍ଦ୍ର ସାହିତ୍ୟ ପ୍ରତି ବେଶୀ ଅନୁରାଗୀ ଥିଲେ। ଇଂରାଜୀ ସାହିତ୍ୟ ସହିତ ସେ ବଙ୍ଗଳା ସାହିତ୍ୟକୁ ଆନନ୍ଦର ସହିତ ପଢ଼ିଛନ୍ତି।

ସେ ଥିଲେ ସ୍ୱୈରବାଦୀ, ଅତିବାସ୍ତବବାଦୀ ତଥା ପଲ୍ଲୀଚେତନାର କବି। କବି ବିନୋଦ ଚନ୍ଦ୍ର ନାୟକ ରଚନା କରିଥିବା ଗ୍ରନ୍ଥଗୁଡ଼ିକ ହେଲା—

କାବ୍ୟକବିତା :

୧. *ହେମଂତୀ* (୧୯୩୩)
୨. *ନୀଳଚନ୍ଦ୍ରର ଉପତ୍ୟକା* (୧୯୫୧)
୩. *ଚନ୍ଦ୍ର ଓ ତାରା* (୧୯୫୨)
୪. *ଇଳାବୃତ୍ତ* (୧୯୫୬)
୫. *ନନ୍ଦାଦେବୀ* (୧୯୬୨)
୬. *ସାତ ତାରାର ଦୀପ* (୧୯୬୨)
୭. *ପୋହଳା ଦ୍ୱୀପର ଇତି କଥା* (୧୯୬୮)
୮. *ଅନ୍ୟ ଏକ ଅସରପି* (୧୯୬୮)
୯. *ସରୀସୃପ* (୧୯୬୯)
୧୦. *ରାଜକୀୟ ନିଃସଙ୍ଗତା* (୧୯୯୦)
୧୧. *ଉଲଙ୍ଗ ରୁଦ୍ର* (୨୦୦୨)
୧୨. *କାଞ୍ଚନ କୁନ୍ତଳାର ତରବାରୀ*

କାବ୍ୟନାଟିକା :

*ଚନ୍ଦ୍ର ଓ ତାରା* (୧୯୫୨)

ସାହିତ୍ୟ ସମାଲୋଚନା :

୧. *କବିତା ପରମେଶ୍ୱରୀ*

## ଜୀବନୀ

୧. *କବି ରବୀନ୍ଦ୍ରନାଥ*

୨. *ଗଙ୍ଗାଧର ମେହେର* (ଇଂରାଜୀ ମନୋଗ୍ରାଫ୍)

## ଅନୁବାଦ :

*ରବୀନ୍ଦ୍ରନାଥ ଠାକୁର ଏବଂ କଜି ନଜ୍‌ରୁଲ୍ ଇସଲାମଙ୍କ କବିତା*

କବି ବିନୋଚନ୍ଦ୍ର ନାୟକଙ୍କ ଦ୍ୱିତୀୟ କବିତା ସଂକଳନ ହେଉଛି *ନୀଳଚନ୍ଦ୍ରର ଉପତ୍ୟକା* । ଏହି ସଂକଳନରେ ଥିବା ପନ୍ଦରଟି କବିତାରେ ଶୁଦ୍ଧ ସ୍ୱୈରବାଦୀ ଚେତନା ଭରପୂର ହୋଇ ରହିଛି। ତାଙ୍କର 'ନୀଳଚନ୍ଦ୍ରର ଉପତ୍ୟକା', 'ମାଳଞ୍ଚ', 'ସେଲିମରୁ ସ୍ୱପ୍ନ', 'ଅଷ୍ଟ୍ରେଲିଆ', 'ହୀରକସ୍ୱପ୍ନ', 'ସୁମେରୁରେ ସନ୍ଧ୍ୟା', 'ପ୍ରିୟା', 'ବେଦୁଇନ୍‌ର ଦେଶ', ''ହେ ଧୂସର ରାଜପଥ', 'ଶୁଆଶାରୀ', 'ସମୁଦ୍ରର ସ୍ୱାଦ', 'ସାଧବ ଝିଅର ଗୋଟଏ କଥା', 'ନୂତନ ଫସଲର ଅଭିନନ୍ଦନ', 'ରାତ୍ରି', 'ସ୍ୱପ୍ନଚାରିକା' ଆଦି ସର୍ବମୋଟ ପନ୍ଦରଟି କବିତାରେ କବି ଆପଣା କାବ୍ୟ ଚେତନାକୁ ଅଭିଳିପିତ କରିଛନ୍ତି।

କବି ଓଡ଼ିଆ କବିତାକୁ ନୂତନ ସ୍ୱର ଓ ନୂତନ ଶୈଳୀର ପ୍ରତିଷ୍ଠା ଆଣି ଦେଇଛନ୍ତି। ଆମରି ନିତିଦେଖା ଭୂଗୋଳକୁ କବି ନୂଆ ରୂପରେ ଆମକୁ ପୁଣି ଦେଖାଇଛନ୍ତି। ଓଡ଼ିଆ କବିତାରେ ବ୍ୟବହୃତ ପୁରୁଣା ଛନ୍ଦକୁ ବର୍ଜନ କରି ସେ ଅତି ଶ୍ରବଣ-ସୁଖ-ଦାୟକ ଅପେକ୍ଷାକୃତ୍ ନୂତନଛନ୍ଦର ପ୍ରୟୋଗ କରିଛନ୍ତି ଓ କବିତାର ଶୈଳୀକୁ ନୂଆ ଦୀପ୍ତିରେ ଝଲସାଇ ଦେଇଛନ୍ତି। ତା ବାଦ୍ କବି ବିନୋଦ ଚନ୍ଦ୍ର ନାୟକ କବିତାର ଆଙ୍ଗିକ ଓ ଆତ୍ମିକରେ ମଧ୍ୟ ନୂଆ ପରୀକ୍ଷା ନିରୀକ୍ଷା କରିଛନ୍ତି।

ତାଙ୍କ କବିତା ଯେପରି ଉଲ୍ଲେଖ ଯୋଗ୍ୟ ଭାବେ ଆବେଗନିଷ୍ଠ ସେହିପରି ପଦବିନ୍ୟାସ, ଛନ୍ଦ ଯୋଜନା, ରସସୃଷ୍ଟି ଓ ଅନ୍ତରିଣ ଗୀତିମୟତା ଦୃଷ୍ଟିରୁ ମଧ୍ୟ କମ୍ ଶିଳ୍ପନିଷ୍ଠ ନୁହେଁ। ତାଙ୍କ କବିତାର ଏହି ଶିଳ୍ପସିଦ୍ଧି ଦୃଷ୍ଟିରୁ ସେ ହୁଏତ ବିଶେଷଭାବେ ରବୀନ୍ଦ୍ରଙ୍କ ଦ୍ୱାରା ପ୍ରଭାବିତ ବୋଲି କୁହାଯାଇ ପାରେ। ତାଙ୍କ କବିତାରେ ନଦୀ, ପର୍ବତ, ମାଡ଼ାଗାସ୍କାର ଲବଙ୍ଗ କ୍ଷେତ, ଲୋହିତ ସାଗରର ମୌସୁମୀ ବାୟୁ ବର୍ଣ୍ଣିତ ହୋଇଛି। ଯଦିଓ କବି ବିନୋଦଚନ୍ଦ୍ର ନାୟକ ଦୂର ନିର୍ଜନ ଭୂଗୋଳର ରୂପକାର ତଥାପି ସେ ତାଙ୍କ କବିତାରେ ସାମଗ୍ରିକ ମଣିଷ ଜୀବନର ଚିତ୍ର ହିଁ ଆଙ୍କିଛନ୍ତି। ତାଙ୍କ କବିତାର ବିଷୟ ପିଣ୍ଡରେ ମଣିଷ ଜୀବନର ବ୍ୟଥା-ବେଦନା, ବିରହ-ମିଳନର ବହୁ ଛବି ଝଲସି ଉଠେ। ଏହା ସତ୍ୟ ଯେ ତାଙ୍କ କବିତା ପ୍ରେମ ପ୍ରଣୟ ଚିତ୍ର ପ୍ରଦାନରେ ମୁଖର। ଦୂର ନିର୍ଜନ ପୃଥିବୀର ଭୂଚିତ୍ର ହୋଇଛି ତାଙ୍କ ପ୍ରଣୟ ରଚନାର ଭୂମି।

'ମାଡ଼ାଗାସ୍କର ଲବଙ୍ଗ କ୍ଷେତେ ଆଦ୍ୟ ଆଷାଢ଼ ବାରି
ଆଲ୍ଲା ମେହରବାନି ସମ ଝରିପଡ଼େ,

ଲୋହିତ ସାଗରେ ମୌସୁମୀବାୟୁ ଝଡ଼ ସୃଷ୍ଟି କରେ
ତା'ର ଇଙ୍ଗିତ ଧରି ବିଭାବରୀ ଆସେ
ଦିଗଅମ୍ବରୀ ନିଗ୍ରୋ ଯୁବତୀ ଯଥା
ଉପଳ ବ୍ୟଥିତ ଗତି ନାଇଲ୍‌ର ତୀରେ
କାମ ଉଦ୍‌ବେଗେ ଚଳେ ରତି ଅଭିସାରେ।

କବି *'ସେଲିମ୍‌ର ସ୍ୱପ୍ନ* କବିତାରେ ଯେମିତି ଲବଙ୍ଗ କ୍ଷେତର ମର୍ମସ୍ପର୍ଶୀ ବର୍ଣ୍ଣନା ଦେଇଛନ୍ତି ସେହିପରି ଗଭୀର ପ୍ରଣୟର ଅନୁଭବକକୁ ତା ସହିତ ଚିତ୍ରଣ କରିଛନ୍ତି।

ତାଙ୍କ ଶବ୍ଦ ଯୋଜନା ଛନ୍ଦ ସୁଷମା ସହିତ ପ୍ରଣୟ ଚିତ୍ର କେତେ ଭାବୋଦ୍ଦୀପକ ତା'ର ଏକ ଉଦାହରଣ ଏଠି ଦିଆ ଯାଇ ପାରେ-

ଦିଗନ୍ତବ୍ୟାପୀ ଲବଙ୍ଗ କ୍ଷେତେ ଝିରିଝିରି ପଡ଼େ ଝରି
ତପନ-ବିହୀନ ସଘନ ବରଷାଧାରା।
ଭିଜା ଜାୟତ୍ରୀ ଫୁଲର ଗନ୍ଧ ବହି
ଈଶାନୀ ସମୀର ବିତରି ଯାଅଇ ଉଡ଼ି
ଆରବ କୁଳୀର ପଲ୍ଲୀର ଅଭିମୁଖେ।
ଦାରୁଚିନି ବନ ଛାୟାଘନ ତିମିରର
କ୍ଷୁଦ୍ର କୁଟୀର ବୁକେ
ନିର୍ବାଣମୁଖୀ ମହମବତୀର ନିଷ୍ପ୍ରଭ ଆଲୁଅରେ
ନିମୀଳ କଣ୍ଠେ ତୋଳିଛି ସେ ଧୀରେ
ଓମାର ଖୈୟାମୀ ପଦ୍ୟ।

*'ଅଷ୍ଟ୍ରେଲିଆ' ହିରକସ୍ୱପ୍ନ* ଓ *'ସୁମେରୁର ସନ୍ଧ୍ୟା'* ତଥା *'ବେଦୁଇନର ଦେଶେ'* କବିତା କବିଙ୍କ ରୋମାଣ୍ଟିକ ଚେତନାର ନିଦର୍ଶନ।

କବିଙ୍କର *'ଶୁଆସାରୀ'* କବିତାଟି ଏକ ଅନବଦ୍ୟ ସୃଷ୍ଟି ଯେଉଁଥିରେ ନାରୀ ପୁରୁଷର ଯୁଗ୍ମ ଜୀବନ ପ୍ରତୀକାତ୍ମକ ଅଭିବ୍ୟକ୍ତି ଲାଭ କରିଛି। ଘର କରିବାକୁ ନେଇ ନାରୀ ପୁରୁଷଙ୍କ ମନୋଭାବ ସୂଚିତ। କବିତାଟି ଶୁଆସାରୀଙ୍କ କଥୋପକଥନ ଛଳରେ ରଚିତ। ତାଙ୍କ ସଫଳ କବିତା ମାନଙ୍କ ମଧ୍ୟରେ ଶୁଆସାରୀ କବିତା ଅନ୍ୟତମ। କବିଙ୍କ *'ସାଧବ ଝିଅର ଗୋଟିଏ କଥା'* କବିତାଟି କବିଙ୍କର ଏକ ସଫଳ କବିତା, ଯେଉଁଥିରେ ଓଡ଼ିଶାର ନୌବାଣିଜ୍ୟର ଗୌରବାବହ ଐତିହ୍ୟ ବର୍ଣ୍ଣିତ । ସାଧବମାନଙ୍କର ବିଦେଶଯାତ୍ରାର ଏକ ମାର୍ମିକ ଚିତ୍ର ଏଥିରେ ସ୍ଥାନିତ ହୋଇଛି। କବିତାଟିର ଛନ୍ଦ ସୁଷମା ଓ ପରିବେଶଗତ ନାଟକୀୟତା ସବୁଠାରୁ ବେଶୀ ସଫଳ ହୋଇଛି।

କବି ବିନୋଦ ଚନ୍ଦ୍ର ନାୟକଙ୍କ କବିତ୍ୱର ଅନ୍ୟ ଏକ ବିଶିଷ୍ଟ ଦିଗ ହେଲା ପରଂପରାକୁ ଚିତ୍ରଣ କରିବା। *'ନୀଳଚନ୍ଦ୍ର ଉପତ୍ୟକା'*ରେ ସ୍ଥାନିତ ସାଧବ ଝିଅର

ଗୋଟିଏ କଥା ବସ୍ତୁତଃ ଏକ କାହାଣୀ ଭିତ୍ତିକ କବିତା ଯାହା ଆମ ପରଂପରାରେ ପ୍ରଚଳିତ। ନୀଳଚନ୍ଦ୍ର ଉପତ୍ୟକାରେ କବିତାସବୁ ଅଧିକାଂଶତଃ ଗୋଟିଏ କଥା ବା, କାହାଣୀକୁ ହିଁ ଚିତ୍ରଣ କରିଛି। ସେଲିମ୍‌ର ସ୍ୱପ୍ନ ଯେମିତି ଏକ ଗାଥା କବିତା ସେମିତି ନୀଳଚନ୍ଦ୍ର ଉପତ୍ୟକାର ଅନ୍ୟାନ୍ୟ କବିତାରେ ଏକ କଥା ଭାଗ ରହିଛି। ହୀରକ ସ୍ୱପ୍ନ, ସାଧବ ଝିଅର ଗୋଟିଏ କଥା, ଶୁଆସାରୀ, ସ୍ୱପ୍ନଚାରୀକା ଆଦି କବିତା ଅନେକାଂଶରେ ବର୍ଣ୍ଣନାତ୍ମକ।

*'ମାଳଞ୍ଚ', 'ନୀଳଚନ୍ଦ୍ର ଉପତ୍ୟକା'*ରେ ଏକ ସାର୍ଥକ କଳ୍ପନାଧର୍ମୀ ରୋମାଣ୍ଟିକ କବିତା। ଏହି କବିତାରେ ଗୋଟିଏ ନାରୀ ସହିତ ବର୍ଷାକାଳକୁ ତର୍କଣା କରାଯାଇଛି। ପ୍ରକୃତି ସହିତ ମଣିଷର ମନ ଓ ଚେତନାର ନିବିଡ଼ ସମ୍ପର୍କକୁ କବି ନାନା ଭାବରେ ଚିତ୍ରଣ କରିଛନ୍ତି।

'ତୁମରି କବରୀ
ସମ କଳା
ଆସିଥିଲା
ଦୂରେ ବିଭାବରୀ
ଗହନ ଓ ସ୍ତବ୍ଧ
ତୁମରି ହାତର
ଆଭରଣ ଟୁଂଟାଂ ଶବ୍ଦ
ସମ ଶୁଭୁଥିଲା
ଯେବେ ଝରୁଥିଲା ଜଳ
ଛଳ ଛଳ କଳ କଳ
କେତେ ଅବିରଳ।

*'ହୀରକ ସ୍ୱପ୍ନ'* କବିତା ବି ସେହି ପ୍ରକୃତି ସମ୍ବନ୍ଧିତ କବିତା। ନୀଳ ଚନ୍ଦ୍ରର ଉପତ୍ୟକାର ପ୍ରକାଶନ ପରେ ତାଙ୍କର ଅଗଣିତ ପାଠକ ତାଙ୍କୁ ଜଣେ ବିଶିଷ୍ଟ ରୋମାଣ୍ଟିକ କବିର ଆସନରେ ବସାଇଥିଲେ । ନୀଳଚନ୍ଦ୍ରର ଉପତ୍ୟକା ବିନୋଦ ନାୟକଙ୍କର ରୋମାଣ୍ଟିକ୍ କାବ୍ୟାନୁଭବର ସୁସ୍ପଷ୍ଟ ସ୍ୱାକ୍ଷର। ଓଡ଼ିଶାର ବିଶିଷ୍ଟ ସବୁଜ କବି କାଳିନ୍ଦୀଚରଣ ପାଣିଗ୍ରାହୀ, ବିନୋଦ ଚନ୍ଦ୍ର ନାୟକଙ୍କର ନୀଳଚନ୍ଦ୍ରର ଉପତ୍ୟକା ସମ୍ପର୍କରେ ଅଭିମତ ଦେଇ କହିଛନ୍ତି। ''ଶ୍ରୀ ବିନୋଦଚନ୍ଦ୍ର ନାୟକଙ୍କର ଦ୍ୱିତୀୟ କବିତା ସଂକଳନ.... ପାଠକକୁ ରୋମାନ୍ସ ଓ ପ୍ରେମର ଏକ ଉଚ୍ଚତମ ଆକାଶ[illegible] ଘେନିଯାଇ ଦିଏ, ତଥା ଏକ ନବୀନ ଓ ନିର୍ମଳ କାରୁଣ୍ୟରେ ଛୁଇଁଯାଏ।

ନୀଳଚନ୍ଦ୍ର ଉପତ୍ୟକାରେ କବି ବିନୋଦ ନାୟକ ମଣିଷର ଜୀବନ ପ୍ରବୃତ୍ତି, ତାର ପ୍ରଜନନ ଇଚ୍ଛା, ଜୀବନର ନୈରାଶ୍ୟ ଓ ନିଃସଙ୍ଗତାକୁ ହିଁ ମୁଖ୍ୟତଃ ଚିତ୍ରଣ କରିଛନ୍ତି।

ସେ ଯଥା ସମ୍ଭବ ଏପୃଥିବୀର ପାର୍ଥିବତା ସହିତ ଏକ ଅଲୌକିକ ଜଗତକୁ ମିଳାଇ ଦେଖିଛନ୍ତି । ତାଙ୍କ କବିତାର ଏହି ସମନ୍ୱୟ ଅତ୍ୟନ୍ତ ମାର୍ମିକ ।

ବିନୋଦନାୟକଙ୍କ ରୋମାଣ୍ଟିକ କାବ୍ୟ ଚେତନାର ବିଶିଷ୍ଟ ଦିଗ ଉପରେ ଅଭିମତ ଦେବାକୁ ଯାଇ ନୀଳଚନ୍ଦ୍ରର ଉପତ୍ୟକାର ମୁଖବନ୍ଧରେ ଓଡ଼ିଶାର ବିଶିଷ୍ଟ ସାମାଲୋଚକ ଓ କଥାଶିଳ୍ପୀ ସୁରେନ୍ଦ୍ର ମହାନ୍ତି ଯେଉଁ ଅଭିମତ ଦେଇଛନ୍ତି ତାହା କବି ବିନୋଦଚନ୍ଦ୍ର ନାୟକଙ୍କ କବିତ୍ୱର ଯଥାର୍ଥ ପରିଚୟ ପ୍ରଦାନ କରେ। ସେ ଲେଖିଛନ୍ତି— ଜୀବନରେ ନାନା କ୍ଳେଦାକ୍ତ ଅନୁଭୂତି ଓ ଦୁର୍ନିବାର ମୁକ୍ତିର ଆକୂତି ବିନୋଦ ନାୟକଙ୍କ କବିତାର ଆଙ୍ଗିକରେ ଆଣିଛି ସୁଦୂରତା ଓ ବ୍ୟାପକତାର ଇଙ୍ଗିତ। ପରାଧୀନ, ପ୍ରପୀଡ଼ିତ ପରିବେଷ୍ଟନୀ ଘେରା କାରାପ୍ରାଚୀର ଲଂଘି ତାଙ୍କର ଅତ୍ୟାଚାରିତ ଆତ୍ମା ଶାନ୍ତି ପାଇଛି ମାଡ଼ାଗାସ୍କାର ବର୍ଷାଭିଜା ଲବଙ୍ଗ କ୍ଷେତରେ, ଅଷ୍ଟ୍ରେଲିଆର ନାଗଫେଣୀ ଓ ଅପାମାର୍ଗ କଣ୍ଟକିତ ମରୁପ୍ରାନ୍ତରରେ, ସୁମେରୁର ଏସ୍କିମୋ କୁଟୀରରେ ବା ଯାଯାବରର ବେଦୁଇନ ଦେଶରେ। ବିନୋଦ ନାୟକଙ୍କ କବିତା ଯଥାର୍ଥରେ ସୁଦୂରର ସଙ୍ଗୀତ। ଯାହା ନିକଟରେ, ଯାହା ଦୁଇ ହାତରେ ପାଇବାର ସୀମା ଭିତରେ ଯାହା ସୁଲଭ-ସେସବୁ ଅତି ମାମୁଲି, ଅତି ଦୈନନ୍ଦିନ, ଅତି ରଙ୍ଗଛଡ଼ା । ତେଣୁ ଦେଶ-କାଳ-ପାତ୍ରର ସଂକୀର୍ଣ୍ଣ ସୀମା ଛାଡ଼ି ବିନୋଦନାୟକଙ୍କ କବିତା କରିଛି ନୂତନ ଜାତି ଓ ନୂତନ ପ୍ରକୃତିର ସନ୍ଧାନ।''

ଚନ୍ଦ୍ର ଓ ତାରା ୧୯୫୧ରେ ପ୍ରକାଶିତ ହୋଇଥିଲା, ଯାହା କବିଙ୍କର ରୋମାନ୍ସ ଧର୍ମୀ ଏକ କାବ୍ୟ ନାଟିକା । ଏହାକୁ ସବୁ ଦୃଷ୍ଟିରୁ ଏକ ମିଥଧର୍ମୀ କାବ୍ୟ ନାଟିକା ବୋଲି କୁହାଯାଇ ପାରେ। ରବୀନ୍ଦ୍ରନାଥଙ୍କ ସୁପ୍ରସିଦ୍ଧ କାବ୍ୟନାଟିକା 'ବିଦାୟ ଅଭିଶାପ' ସହିତ ଚନ୍ଦ୍ର ଓ ତାରାର ସାମଞ୍ଜସ୍ୟ ରହିଥିବା ମନେହୁଏ। ଏହି 'ଚନ୍ଦ୍ର ଓ ତାରା' କାବ୍ୟ ନାଟିକାର ବିଷୟ ବସ୍ତୁ ଚନ୍ଦ୍ର ପୁରାଣରୁ କବି ଗ୍ରହଣ କରିଛନ୍ତି। ଭାରତୀୟ ପୁରାଣ କଥାମାନଙ୍କ ମଧ୍ୟରୁ ଏହା ସବୁଠାରୁ ଅଧିକ ଲୋକପ୍ରିୟ ପୌରାଣିକ ଆଖ୍ୟାନ।

ପୁରାଣ କଳ୍ପଟି ଏହିପରି ଯେ ଦେବଗୁରୁ ବୃହସ୍ପତିଙ୍କ ଠାରେ ଚନ୍ଦ୍ର ଶିଷ୍ୟତ୍ୱ ଗ୍ରହଣ କରି ବିଦ୍ୟାଭାସ କରୁଥିଲେ। ସେ ଗୁରୁପତ୍ନୀ ରୋହିଣୀ (ତାରା) ପ୍ରତି ଆସକ୍ତ ହୋଇ ନିଷିଦ୍ଧ ପ୍ରଣୟରେ ମତ୍ତ ରହିଲେ। ଗୁରୁ ବୃହସ୍ପତି ଏ କଥା ଜାଣିପାରି ଚନ୍ଦ୍ରଙ୍କୁ ଦେହରେ ପାପର କଳଙ୍କ ରହିଲା ବୋଲି ପୌରାଣିକ ଆଖ୍ୟାନ ରହିଛି। ଏପରି ଏକ ଆଖ୍ୟାନକୁ ଭିତ୍ତିକରି ବିନୋଦ ନାୟକଙ୍କ କାବ୍ୟ ନାଟକଟି ଗଢ଼ି ଉଠିଛି।

ବିନୋଦ ନାୟକଙ୍କ ଚନ୍ଦ୍ର ଓ ତାରା ଓ ରବୀନ୍ଦ୍ର ନାଥଙ୍କ 'ବିଦାୟ ଅଭିଶାପ' ମଧ୍ୟରେ ଯେଉଁ ସାମଞ୍ଜସ୍ୟ ରହିଛି ତନ୍ମଧ୍ୟରୁ ଛନ୍ଦ ସମାନତା ଅନ୍ୟତମ। ଚନ୍ଦ୍ର ଓ ତାରା ସବୁ ମତେ ଏକ ପ୍ରଣୟ ପ୍ରଧାନ ରୋମାଣ୍ଟିକ କାବ୍ୟକୃତି।

କବିଙ୍କ *ଇଳାବୃତ୍ତ* (୧୯୫୬) ମସିହାରେ ପ୍ରକାଶିତ ଏକ ଶୁଦ୍ଧ ତଥା ବର୍ଣ୍ଣାଢ଼୍ୟ ରୋମାଣ୍ଟିକ୍ କବିତାର ସଂକଳନ, ଯାହା ଓଡ଼ିଶାର ସାରସ୍ୱତ ପରାଂପରାରେ ତାଙ୍କୁ ଜଣେ

ସଫଳ ଓ ସମର୍ଥ ରୋମାଣ୍ଟିକ୍ କବିର ମର୍ଯ୍ୟାଦା ଦେଇଛି। ନୀଳଚନ୍ଦ୍ରର ଉପତ୍ୟକା ପରି ଇଳାବୃତ୍ତ କବି ବିନୋଦଚନ୍ଦ୍ର ନାୟକଙ୍କ ଏକ ଅତି ଲୋକପ୍ରିୟ କବିତା ସଂକଳନ।

'ଆକାଶର କବିତା' 'କେୟୂରେ କଙ୍କଣେ', 'ଏକ ରାଜହଂସ', 'ଇଳାବୃତ୍ତ', 'ଜମିନ୍ ଆସ୍ମାନ', 'ମଣି ଅଙ୍ଗୁରୀୟ', 'ଇନ୍ଦ୍ରମେଘ', 'ନୀଳନଦୀ', 'ଝଡ଼ର ପକ୍ଷୀ', 'କେଉଁଠି ସୁନାର ଦ୍ୱୀପ', 'ଏଥେ ବି ସାଗର' ଆଦି *ଇଳାବୃତ୍ତ*ରେ ସଂକଳିତ କବିତା ତରୁଣ ପ୍ରବୀଣ ନିର୍ବିଶେଷରେ ଅନେକଙ୍କୁ ମୁଗ୍ଧ କରିଦିଏ। ଏହି କବିତାଗୁଡ଼ିକ ତାଙ୍କ କବି ଜୀବନର ଏକ ଅନ୍ୱେଷା। ସେ ଆପଣାର ପ୍ରେମିକତା, ଶ୍ରଦ୍ଧାଶୀଳତାକୁ ଅନୁଭବ କରିବା ପାଇଁ ଯେପରି କବିତା ରଚନାରେ ଆପଣାକୁ ନିୟୋଜିତ କରିଛନ୍ତି।

ଇଳାବୃତ୍ତର କବିତାଗୁଡ଼ିକ ପାଠକ ମନ ଉପରେ ଯାଦୁକରୀ ପ୍ରଭାବ ସୃଷ୍ଟି କରେ। ଏକ ରୋମାଞ୍ଚକର ଅନନ୍ୟ ପ୍ରେମିକତାର ଅନୁଭବ ବଳୟ ଭିତରକୁ ନେଇଯାଏ। ଦୂର ନିର୍ଜନ ପୃଥିବୀର ନୀରବତା ଭିତରକୁ ପାଠକର ମନ ଓ ଚେତନାକୁ ନେଇଯାଏ। ସମଗ୍ର ଓଡ଼ିଆ ସାହିତ୍ୟରେ ବିନୋଦ ଚନ୍ଦ୍ର ନାୟକଙ୍କ ଇଳାବୃତ୍ତ ଏକ ଯାଦୁକରୀ ପ୍ରଭାବ ସୃଷ୍ଟି କରୁଥିବା କବିତା ଗ୍ରନ୍ଥ। ଯାହାର ଛନ୍ଦ ଅତ୍ୟନ୍ତ ଶ୍ରବଣସୁଖ ଦାୟକ। କବି ଆପଣାର ବିଳାସିତା ବିଷୟରେ ଘୋଷଣା କରି ଲେଖିଛନ୍ତି—

ସଖି ମୁହିଁ ଯେ ଆକାଶବିଳାସୀ
ଦୂର ତାରା ସଂଚିତ ଅୟନେ
ବସି ଲେଖେଁ ମୁଁ ମାଟିର କବିତା
ରୂପ ବିଳାସେ ମେଘର ଶୟନେ,
କେବେ ଇନ୍ଦ୍ରଧନୁର ଭରସେ
ଯାଏଁ ଉଡ଼ି ମୁ ପୁଲକ ରଭସେ।

କବି ବିନୋଦ ଚନ୍ଦ୍ର ନାୟକ ଶବ୍ଦ ଭିତରେ ଗଭୀର ଅନୁଭବକୁ ବିନ୍ୟସ୍ତ କରିଛନ୍ତି। କବି ପ୍ରେମକୁ କେବଳ ଦେହର ଭୂଗୋଳର ନୁହେଁ, ମନରେ, ସ୍ୱପ୍ନରେ ଅନୁଭବ କରିଛନ୍ତି। ସେ ପୃଥିବୀର ଶୁଷ୍କ ପ୍ରେମହୀନତା ଠାରୁ ନିଜକୁ ପ୍ରତ୍ୟାହାର କରିନେଇ ପ୍ରେମର ଗଭୀର ତନ୍ମୟତାରେ ଅଧିକରୁ ଅଧିକ ଆକାଶମୁଖୀ ହୋଇଛନ୍ତି।

ଏହି ଶସ୍ୟ ଶ୍ୟାମଳା ପୃଥିବୀ କେତେ ସୁନ୍ଦର, ତାଠାରୁ ଆହୁରି ସୁନ୍ଦର ହେଉଛି ପ୍ରେମର ପୃଥିବୀ,

ସଖି କି ହେବ ମାଟିର ଦୀପାଳି
ଜାଳି ତୋହରି ସନ୍ଧ୍ୟା କୁଟୀରେ
ପୋଛ ନୟନ ଲୋତକ ରାଧିକା
ସାଥି ଶୟନୁ ମୁଁ ନେଲି ଛୁଟିରେ!
ତୋର ଶସ୍ୟ ଶୋଭନା ଧରଣୀ

ମୁଁ ତ ମଗ୍ନଛି ସାରିଛି ସଜନି
ଯିବି ଜ୍ୟୋତି ବଲ୍ଲରୀ ବିତାନେ
ମୋତେ ଡାକେ ଅପ୍‌ସରା ନଟୀରେ।

କବି ଗଭୀର ପ୍ରଣୟର ଅନୁଭବ ପାଇଁ ଚରମ ବ୍ୟକୁଳତା ପ୍ରଦର୍ଶନ କରିଛନ୍ତି। ପ୍ରଣୟାନୁଭବରେ ଏତେ ବ୍ୟକୁଳତା ତାଙ୍କ ସମୟର ଅନ୍ୟ କୌଣସି ରୋମାଣ୍ଟିକ୍ କବି ପ୍ରଦର୍ଶନ କରି ନାହାନ୍ତି । କବି ନାୟକ ଭାବେ ନାୟିକାର ଭୁଜ ବଲ୍ଲରୀ ଭିତରେ ବନ୍ଦୀ ହୋଇ ତା ପୀନ ଉରଜ ଭିତରେ ନିଜକୁ ହଜାଇ ଦେବାପାଇଁ ଅଭିଳାଷ ପୋଷଣ କରିଛନ୍ତି। ତାକୁ ରମଣରେ ଅଧୀରା କରି ତା ଓଠରୁ ମଦିରା ବା ମଧୁପାନ କରିବା ପାଇଁ ଚାହିଁଛନ୍ତି। ପ୍ରଣୟର ଏହି ବିଭୋରପଣିଆ ଭିତରେ କବି ପ୍ରଣୟୀକୁ ଶୁଷ୍କ ବାସ୍ତବତାର କାହାଣୀ ନ ଶୁଣାଇବା ପାଇଁ ଅନୁରୋଧ କରିଛନ୍ତି। କାରଣ ସ୍ଥୂଳ ବାସ୍ତବତା ପ୍ରଣୟର ଅନୁଭବ ପାଇଁ ଯେପରି ବାଧକ କବିଙ୍କ *'ଆକାଶର କବିତା'*ରୁ କେତେ ଧାଡ଼ି ଏ ପ୍ରସଙ୍ଗରେ ଉଦ୍ଧାର କରାଯାଇ ପାରେ:

'ମୁଁ ଗୋ ସନ୍ତରି ନଭନୀଳରେ
ରଚି ରସର ପରିଧି ନୃତ୍ୟ
ତାର ଭୁଜ ବଲ୍ଲରୀ ବନ୍ଧେ
ପୀନ ଉରଜରେ ହେବି ଲୁପ୍ତ
ତାରେ ରମଣରେ କରି ଅଧୀରା
ନେବି ଓଠରୁ ଚିପୁଡ଼ି ମଦିରା
ମୁହିଁ ମତୁଆଲା ହୋଇ ସଘନେ
ଘନ ଜଘନେ ରହିବି ସୁପ୍ତ।
ମୋତେ ମାଟିର କାହାଣି ଶୁଣାନା
ସଖି ତୋ ପଦେ ମୋ କୋଟି ମିନତି
ତୋର କଣ୍ଟ-ତାପରେ ମଉଳେ
ଦେଖ ସଂଧ୍ୟାର ମଧୁ ମାଳତୀ,

ଗୋଟିଏ କଡ଼େ ପୃଥିବୀର ସକଳ ସ୍ଥୂଳ ପାର୍ଥିବତା ଓ ଅନ୍ୟ କଡ଼େ ସ୍ୱପ୍ନ ଓ କଳ୍ପନାର ଦୂର ନଭ। କବି କିନ୍ତୁ ପ୍ରେମ ପାଇଁ ଆକାଶ ମୁଖୀ ହେବାକୁ ଅଭିଳାଷ ପୋଷଣ କରିଛନ୍ତି, ଭୂମି ସଂଲଗ୍ନ ହେବାକୁ ନୁହେଁ।

କବିଙ୍କ *'ଇଳାବୃତ'* ସଂକଳନରେ ସର୍ବୋତ୍ତମ କବିତାଟି ହେଉଛି ତାଙ୍କର *'ଇଳାବୃତ'*, ଯେଉଁ କବିତାଟି ତାଙ୍କ କାବ୍ୟ ଚେତନାକୁ ବିଶେଷ ଭାବେ ପ୍ରକଟିତ କରିପାରିଛି। ଏ ରଙ୍ଗହୀନ ଧୂସର ଧରଣୀ କବିଙ୍କୁ ମୁଗ୍ଧକରି ପାରି ନାହିଁ। ସେ ଅନ୍ୟ ପୃଥିବୀକୁ ଚାଲିଯିବା ପାଇଁ ଅଭିଳାଷ ପୋଷଣ କରିଛନ୍ତି। ଯେଉଁ ପୃଥିବୀରେ କବି

କେବେ ନୈରାଶ୍ୟର ଗୀତ ଗାଏ ନାହିଁ ଓ ଖାଦ୍ୟ ଶସ୍ୟ ପାଇଁ କେହି କଷ୍ଟକର ପ୍ରୟାସ କରେ ନାହିଁ। କବି ଲେଖିଛନ୍ତି—

'ମୁଁ ଶୁଣିଛି ଆହା ନିରାଶ କବିତା ନାହିଁ ଗାଏ
ବିଭ୍ରମ ସୁରେ ତହିଁ କବି ।
ମେଘେ ବିଦ୍ୟୁତ ନୃତ୍ୟେ ନୂପୁର ବାଜେ ସତ
ବୃତ୍ତ ନୁହେଁ ତା ଭୈରବୀ ।
ଝରଣା ଲଂଘେ ଲମ୍ପନେ ସତ ଗିରିଦରୀ
ତଥାପି ବନ୍ୟା କନ୍ୟା ନୁହେଁ ତା ସହଚରୀ
ବନ୍ଦୀ ତହିଁରେ କେବଳ ତରୁଣ ବର ତନୁ
କେଉଁ ସୁନନ୍ଦା ଭୁଜ ବଲ୍ଲରୀ କାରାଗାରେ
ବାହି ନେ ବାହି ନେ ଆକାଶ ନାବିକ ତରୀ ମୋର
ଇଳାବୃତ୍ତର ପର ପାରେ ।

କବି ଗୋଟିଏ ଦୁଃଖ ବଞ୍ଚନା ହୀନ ସୁନ୍ଦର ପୃଥିବୀର କଳ୍ପନା କରିଛନ୍ତି। ଯେଉଁଠି ପୃଥିବୀ ଠାରୁ ଆହୁରି ଅଧିକ ସବୁଜ ସୁନ୍ଦର ଶ୍ୟାମଭୂମି, ନୀଳ ନିବିଡ଼ ଆକାଶ ମଥାନଭାଙ୍ଗିଛି, ଯେଉଁଠି ପ୍ରଣୟର ଗଭୀର ଆଶ୍ଳେଷ ଭିତରେ ରାତିଦିନ ଜଣା ପଡ଼େ ନାହିଁ। ସେହି ଅମରାବତି ଭଳି ପୃଥିବୀ ତାଙ୍କର ଇପ୍‌ସିତ ପୃଥିବୀ । କବି ଯେଉଁ ବାସ୍ତବ ପୃଥିବୀର ବାସିନ୍ଦା, ସେଠି ଦୈନ୍ୟ, ଦୁର୍ଭିକ୍ଷ ରହିଛି, ରହିଛି ପ୍ରେମର ପ୍ରତାରଣା। କବି ଏ ପୃଥିବୀଠାରୁ ଆଉ ଏକ ସୁନ୍ଦରତର ପୃଥିବୀର ପରିକଳ୍ପନା କରିଛନ୍ତି। ଏହି ଧୂସର, ପୃଥିବୀ ଯାହା ବେଳେ ବେଳେ ରଙ୍ଗହୀନ ପ୍ରେମହୀନ, ଯେଉଁଠି ନାରୀର ପ୍ରତାରଣା ରହିଛି, ଯେଉଁଠି ଅମୃତ ହାଣ୍ଡିରେ ବିଷ ମିଶିଯିବାର ଅସରନ୍ତି ଘଟଣା ଘଟୁଛି ସେଠି କବିଙ୍କୁ ଯେପରି ବଡ଼ ଦୁର୍ବହ ଲାଗୁଛି। କବି ଲେଖିଛନ୍ତି—

''ଆହୁରି ଅଛିରେ ଆନ ନୀଳାକାଶ ଶ୍ୟାମଭୂମି
ଆନ ସୃଷ୍ଟି ସେ ଦେବତାର
ଦିନ ସରେ ତହିଁ ଅଳସ ବିଳାସେ, ରାତି ଆସେ
ଶୟନ ସୋହାଗେ ବନିତାର
ତହିଁବି ଝରଣା ଧାରା ଶିଉଳିର ସମାକୁଳ
ସନ୍ତରି ଧାଏଁ ନିୟୁତ ବାଳିକା ବନଫୁଲ
ଭୃଙ୍ଗ ପହୁଡ଼ି ଥାଏ ପାଖୁଡ଼ାର ପରାଗରେ
ରଥାଙ୍ଗ ନାହିଁ ଯାଏ ଛାଡ଼ି ବଧୂ ନଦୀଧାରେ
ବାହିନେ ବାହିନେ ଆକାଶ ନାବିକ ତରୀ ମୋର
ଇଳାବୃତ୍ତର ଆର ପାରେ ।

ସେହିପରି ଇଳାବୃତ୍ତର *'ଜମିନ୍ ଆସ୍ମାନ୍'* ଅନ୍ୟ ଏକ କବିତା ଯାହା ତାଙ୍କ

ସ୍ୱୈରବାଦୀ ଚେତନାର ସ୍ୱାକ୍ଷର ବହନ କରିଛି। କବିତାଟି ମାଟି ଓ ଆକାଶ ମଧ୍ୟ ଭାଗରେ ମଣିଷଙ୍କ ଜୀବନ କିପରି ଈଶ୍ୱରଙ୍କ ବରଦାନ କବି ବିନୋଦ ଚନ୍ଦ୍ର ନାୟକ ଗଭୀର ମାର୍ମିକତା ଭିତରେ ବର୍ଣ୍ଣନା କରିଛନ୍ତି। ମଣିଷ ଜୀବନ ତା'ର ଯାବତୀୟ ଦୁଃଖ ଦୁର୍ଦ୍ଦଶା ସତ୍ତ୍ୱେ ଯେ ଦେବତାର ଆଶୀର୍ବାଦ ପରି । ତେଣୁ କେହି ଜଣେ ଅଭିମାନରେ ପୃଥିବୀକୁ ପିଠି କରି ରୁଷି ବସିବା ଉଚିତ୍ ନୁହେଁ ବୋଲି କବି କହିଛନ୍ତି। ପୃଥିବୀରେ ଯେଉଁ ରୂପତୃଷ୍ଣା ଆକର୍ଷଣ ସବୁ ରହିଛି, ଜଣେ ତା'ର ବିଳାସୀ ହେଲେ ହିଁ ଜୀବନ ଜଣକୁ ମଧୁର ଲାଗିବ। ସେ ମୁକ୍ତିପାଇଁ ମୋକ୍ଷ ପାଇଁ ଜଣକର ସର୍ବବାଞ୍ଛା ଅପେକ୍ଷା ମର୍ତ୍ତ୍ୟପ୍ରୀତି ଅଧିକ କାମ୍ୟ । ସେ ଲେଖିଛନ୍ତି—

"ତଳରେ ଜମିନ୍ ଉପରେ ଏ ଆସମାନ୍
ଏ ଜୀବନ ସଖି ଖୋଦାର ମେହରବାନି
ଗାଅ ଗାଅ ତେଣୁ କ୍ଷଣିକର ଜୟଗାନ
କଣ୍ଠରୁ ପୋଛ କୁଣ୍ଠିତ ମୂଢ଼ ବାଣୀ।
ଭଙ୍ଗୁର ସିନା ପାନପାତ୍ର ଗୋ ତୋର
ଅଙ୍ଗୁର ରସ ଅଙ୍ଗୁଳି ଭାରେ ପୀଡ଼ି
ତୃଷିତ ମୋହର ଶୁଷ୍କ ଅଧର ତଳେ
ମଧୁତାର ଦିଅ ଅଳପ ଅଳପ ଭିଡ଼ି
ମୃଗ ତୃଷ୍ଣାର ସପନ ବିଳାସ ପାଇଁ
ମରଣ ପରେ ମୁଁ ସ୍ୱର୍ଗର ନାହିଁ ମାନି
ତଳରେ ଜମିନ୍ ଉପରେ ଏ ଆସ୍‌ମାନ୍
ଜାଣେ ଏ ଜୀବନ ଖୋଦାର ମେହେରବାନି।"

ଜଣେ ବଡ଼ କବି ଜୀବନକୁ ବିଳାସ ବୋଲି ମନେକରେ । କବି ବିନୋଦ ଚନ୍ଦ୍ର ନାୟକ ଜୀବନକୁ ପଳ ପଳ କରି ଉପଭୋଗ କରିବା ପାଇଁ ସ୍ୱପ୍ନ ଦେଖିଛନ୍ତି। ତାଙ୍କ କବି ଆତ୍ମାଟି ଯେପରି ଗୋଟିଏ ବିମୁଗ୍ଧ ପକ୍ଷୀର ଉଲ୍ଲସିତ ଉଡ଼ାଣ— ମାଟିର ନିବିଡ଼ ବନସ୍ପତି କୋଳରୁ ନୀଳ ନିବିଡ଼ ଆକାଶ ଆଡ଼େ।

ଜୀବନକୁ ପ୍ରାଣଭରି ଉପଭୋଗ କରିବା ପାଇଁ କବି ସମଗ୍ର ମଣିଷ ଜାତିକୁ ଆହ୍ୱାନ କରିଛନ୍ତି। ତାଙ୍କ କବି ଆତ୍ମା ଏହି ବୃହତ୍ତର ବ୍ରହ୍ମାଣ୍ଡର ମାଟି ଓ ଆକାଶ ସବୁ କିଛିକୁ ପ୍ରଦକ୍ଷିଣ କରିବା ପାଇଁ ଯେପରି ଉତ୍ସୁକ ହୋଇ ପଡ଼ିଛନ୍ତି, ଜଣେ ଜୀବନକୁ ମିଳନ ପର୍ବର ପାର୍ବଣୀ ବୋଲି ଜ୍ଞାନ କରୁ। ଏ ଜୀବନ ବିରହର ଗୀତ ନୁହେଁ ବରଂ ମିଳନର ମଧୁର ତାନ। କବିଙ୍କ ଭାଷା:

"ଏଇ ମିଳନର ମୂର୍ଚ୍ଛନା ଏକ ତାନେ
ଆଜି ଆ ଗାଇବା ଆମେରେ ଯୁଗଳ ପ୍ରାଣୀ
ତଳରେ ଜମିନ୍ ଉପରେ ଏ ଆସ୍‌ମାନ୍

ମଧ୍ୟେ ଜୀବନ ଖୋଦାର ମେହେରବାନି।

କବି ଜୀବନ କେମିତି ମହାକାଳ ଗର୍ଭରେ କ୍ଷଣିକ ତାହା ଚେତେଇ ଦେଇ ସମସ୍ତଙ୍କୁ ଜୀବନର ମିଳନ ପର୍ବରେ ରହିବା ପାଇଁ ଆହ୍ୱାନ କରିଛନ୍ତି। ସଞ୍ଜୀଦୀପ ପରି ଜୀବନଦୀପ ହୁଏତ ଟିକିଏକୁ ଲିଭିଯିବ । ଏ ଜୀବନ ପାନ୍ଥଶାଳାର ପଥିକ ଜୀବନ ପରି ଅଳ୍ପଦିନ ପାଇଁ। ତଥାପି କବି ଏହି ଅଳ୍ପ କ୍ଷଣର ଜୀବନ ବିଷୟରେ ତଥାପି ଆଶାବାଦୀ। କବି କହିଛନ୍ତି- ଜହ୍ନି ଫୁଲ ପରି ଅତି ଅଳ୍ପ ସମୟ ପାଇଁ ଫୁଟିଲେ ବି, ଜହ୍ନି ଫୁଲ ପ୍ରସ୍ଫୁଟନର ଗୌରବ ଭିତରେ ଜୀବନ ବଞ୍ଚିବା ଉଦ୍‌ଭାସିତ ହେଉ ବୋଲି କବି କାମନା କରିଛନ୍ତି। କବିଙ୍କ ଭାଷାରେ:-

''ନୁହେଁ ଏ ଜୀବନ ବିରାଟ ଭୂମିକା ନୁହେଁ
ପ୍ରଭାତୀ ସଳିତା ଏ ପରା ତୁଳସୀ ମୂଳେ
ପାନ୍ଥଶାଳାରେ ପଥିକ କି ଆମେ ଦୁହେଁ
ନାବିକ କି ଆମେ ଦୂରବାହୀ ନଦୀକୂଳେ,
ରୂପ ମଂଚର ରାଜନଟ ରାଜନଟୀ
ରଚନା କରିବା ବିଳାସର ଅଭିନୟ
ଜହ୍ନିଲତାର କୁସୁମ ବିଭବ ସମ
ଗାଇବା କ୍ଷଣିକ ଜୀବନର ଜୟ ଜୟ।
ଭୁଲି ଯା ଭୁଲି ଯା ଛୋଟ ଶତ ଅପମାନ
ଛୋଟ ବ୍ୟର୍ଥତା ମର୍ମ ଘାତକ ବାଣୀ,
ତଳରେ ଜମିନ୍ ଉପରେ ଏ ଆସମାନ୍'
ଗାଅ, 'ଏ ଜୀବନ ଖୋଦାର ମେହେରବାନି।''

*'ନୀଳନଦୀ'* ତାଙ୍କ ଇଳାବୃତ୍ତ ସଂକଳନର ଆଉ ଏକ ସାର୍ଥକ କବିତା। ଦୂରତମ ପୃଥିବୀ ପ୍ରତି ତାଙ୍କର ଯେଉଁ ଅତୁଳନୀୟ ସମ୍ମୋହନ ତାହା ଏହି 'ନୀଳନଦୀ' କବିତାର ଛତ୍ରେ ଛତ୍ରେ ପ୍ରତୀକିତ ହୋଇଛି। ଦୂରବାହୀ ନଦୀ ଓ ଦୂରତମ ଭୂଗୋଳ ପ୍ରତି ସମ୍ମୋହିତ ହେବାର ଦୁର୍ବାର ପ୍ରବଣତା ତାଙ୍କ କବିତଚିତ୍ତକୁ ବାରବାର ଆନ୍ଦୋଳିତ କରିଛି। ଦୂରତମ ଭୂଖଣ୍ଡରେ ପ୍ରବାହିତ ନଦୀଟି ଭିତରେ ସେ ଆପଣା ଜନପଦର ନଦୀକୁ ଦେଖିଛନ୍ତି।

ନୀଳନଦୀ ହିଁ ମିଶରକୁ ଶସ୍ୟଶ୍ୟାମଳା କରିଛି। ଯେଉଁଠି ଗୋଟିଏ ନାମହୀନ ପକ୍ଷୀ ଗୀତଗାଏ, ଯେଉଁଠି ନଦୀ ସ୍ୱଚ୍ଛ ସ୍ରୋତ ଚିରପ୍ରବାହମାନ, ଯେଉଁଠି ସୁନାମାଛ ଢେଉ କାଟି ଆଗକୁ ଯାଏ, ଏହି ନୀଳନଦୀ କେତେ ସ୍ମୃତିର ମୂକ ସାକ୍ଷୀ । ମିଶରର କେତେ ସ୍ମୃତି ବିଜଡ଼ିତ ଇତିହାସ ନୀଳନଦୀ ସହିତ ସଂଶ୍ଳିଷ୍ଟ। କବି ବିନୋଦଚନ୍ଦ୍ର ନାୟକ କାହିଁ କେତେ କାଳ ଇତିହାସରୁ ବିଷୟ ଆଣି ନୀଳନଦୀ ସହିତ ଆପଣାର କଳ୍ପନା ଦେଇ ଯୋଡ଼ିଛନ୍ତି। କବି ଲେଖିଛନ୍ତି—

ତା ରୂପ ଛଟାରେ ଚକିତ ନୟନେ ଚାହେଁ
ପଠାର ପଥର ଫାଟୁଁ ଅଜଗର ସାପ,
ସେ ଘାଟରୁ ବୁଡ଼ି ଏ ଘାଟ ପହଁରି ଆସେ
ତା ପାଦ ପାହୁଡ଼ି ମଣି ଲୋଭେ ପାଣି କାକ!
କେଉଁ ଯୁଗତଳେ ମିଶରର ରାଜବାଳା
ଯାଯାବର ଏକେ ପ୍ରାଣ ସଁପିଥିଲା ବୋଲି,
ଚନ୍ଦନ କାଠ ଫାଟକରେ ରାଜାଦେଶେ
ତାଶିର ଶୋଣିତେ ପଥ ଧୂଳି ହେଲା ଗୋଳି।

କଳ୍ପନା ପ୍ରବଣ କବି ସୁଦୂରକୁ ପଳାୟନ କରିଛନ୍ତି, ଆହୁରି ସୁନ୍ଦରତର ମଧୁର ପରିବେଶ ସନ୍ଧାନରେ। କବିଙ୍କର ଏହି ପଳାୟନ ବାଦୀ ମନୋବୃତ୍ତି ଅଧିକାଂଶରେ ପଳାୟନ ପରି ମନେହୁଏ।

ବିନୋଦ ନାୟକ ରୋମାଣ୍ଟିକ୍ କାବ୍ୟାନୁଭବକକୁ ବହୁଳ ଭାବରେ ତାଙ୍କର କବିତାରେ ଅଭିବ୍ୟକ୍ତ ଦେଇଥିଲେ ହେଁ ସବୁ କବିତାରେ ପ୍ରାୟ କ୍ଲାସିକ୍ କବିତାର ବୋଳ ଲାଗିଛି। କବି ତାଙ୍କ ଭାବ, ଭାଷା ପ୍ରୟୋଗରେ ଯେତିକି ସ୍ୱଦେଶୀ ଲାଗନ୍ତି ସେତିକି ବିଦେଶୀ ଲାଗନ୍ତି। ଯେତିକି ସ୍ୱୈରବାଦୀ ଲାଗନ୍ତି ତତୋଧିକ ଶାସ୍ତ୍ରୀୟ ଲାଗନ୍ତି। ସେ ପୁଣି କେତେକାଂଶରେ ବାସ୍ତବବାଦୀ, ସେମିତି ଅତି ବାସ୍ତବବାଦୀ ମଧ୍ୟ। ବିଂଶ ଶତାବ୍ଦୀର ଅତିବାସ୍ତବବାଦୀ ଚେତନାକୁ ସେ ଓଡ଼ିଆ ସାହିତ୍ୟରେ ରୂପ ଦାନ କରିଛନ୍ତି। ତାଙ୍କ ସରୀସୃପ କବିତା ଗ୍ରନ୍ଥ ଯାହାର ଏକ ପ୍ରମାଣ।

ତାଙ୍କ ଇଳାବୃତ୍ତ କବିତା ଗ୍ରନ୍ଥ ଅତି ନିବିଡ଼ ଭାବେ ସ୍ୱୈରବାଦୀ ଚେତନା ପରିପ୍ରକାଶ । ସମୟର ସୁବିଖ୍ୟାତ ସ୍ୱୈରବାଦୀ କବି ମାନସିଂହ, ରାଧାମୋହନ ଗଡ଼ନାୟକ, କୃଷ୍ଣଚନ୍ଦ୍ର ତ୍ରିପାଠୀ ଆଦିଙ୍କ ଠାରୁ ବିନୋଦଚନ୍ଦ୍ର ନାୟକ ତାଙ୍କ କଳ୍ପନା ବିଳାସ, ପ୍ରୟଣଚେତନା, ଛନ୍ଦ ଯୋଜନା ତଥା ପରିବେଷଣରେ ଅଧିକ ରୋମାଣ୍ଟିକ ମନେ ହୁଅନ୍ତି। ତଥାପି ବିନୋଦ ନାୟକଙ୍କ କାବ୍ୟ ଚେତନା ଭିତରେ ଜଣେ ପାଠକ ବାସ୍ତବବାଦୀ, ଅତିବାସ୍ତବବାଦୀ, ତଥା ସ୍ୱୈରବାଦୀ ଚେତନାର ସମନ୍ୱୟକୁ ଲକ୍ଷ୍ୟ କରିଥାଏ। ଆଧୁନିକ ଓଡ଼ିଆ କବିତା ଧାରାରେ କବି ବିନୋଦ ଚନ୍ଦ୍ର ନାୟକଙ୍କ ସୌନ୍ଦର୍ଯ୍ୟ ଚେତନା ଅତି ଚମତ୍କାର। ସେ ନାରୀ ଓ ନାରୀ ପ୍ରେମର ମୁଗ୍ଧାନୁଭୂତିକୁ ପରିବେଷଣ କରୁଥିଲା ବେଳେ କୀଟସ୍ ଓ ଓମରଖୟାମ୍‌ଙ୍କୁ ସ୍ମରଣକୁ ଆସିଯାନ୍ତି।

କୀଟସ୍‌ଙ୍କର ଇନ୍ଦ୍ରିୟାନୁଭୂତି ଓ ଓମ୍‌ରଖୟାମ୍‌ଙ୍କ ନାରୀପ୍ରେମର ଏକ ସମନ୍ୱିତ କାବ୍ୟ ଚେତନା ବିନୋଦ ନାୟକଙ୍କ 'ଇଳାବୃତ୍ତ' କବିତାରେ ପରିଲକ୍ଷିତ। ବାସ୍ତବତା ପ୍ରତି ବିମୁଖତା ନୁହେଁ ବରଂ ପ୍ରେମପୂର୍ଣ୍ଣ ଜୀବନ ସହିତ ବାସ୍ତବତାକୁ ସମନ୍ୱିତ କରି ବିନୋଦ ନାୟକ କବିତା ରଚନା କରିଛନ୍ତି। ତାଙ୍କ କବିତାରେ ସ୍ୱକୀୟ ପ୍ରେମର ଚିତ୍ରଣ ଅପେକ୍ଷା ପରକୀୟା ପ୍ରେମର ଚିତ୍ରଣରେ ସେ ଯେତିକି ପାର୍ଥିବ ତାଠାରୁ ଅଧିକ ଅପାର୍ଥିବ।

ବିନୋଦଚନ୍ଦ୍ର ନାୟକ ତାଙ୍କର ସୂକ୍ଷ୍ମ, ସୌନ୍ଦର୍ଯ୍ୟ ଚେତନାରେ ଇଂରାଜୀ କବି ଡି.ଏଚ୍.ଲରେନସ୍‌ଙ୍କ ପରି ଦୈହିକ ପ୍ରଣୟର ଚିତ୍ର ଆଙ୍କିଛନ୍ତି। ବିନୋଦ ଚନ୍ଦ୍ର ନାୟକ ଥିଲେ ପରକୀୟା ପ୍ରୀତିର ଉପାସକ ଓ ସ୍ୱପ୍ନ ପ୍ରଣବ କବି। କବି ପ୍ରାଣର ପ୍ରଣାୟାଭିସାର, ଆନନ୍ଦାନୁଭୂତି, ଓ ତତ୍‌ସହିତ ଏକ ସମୁନ୍ନତ ବେଦନାବୋଧ ତାଙ୍କ କବିତାରେ ଫୁଟି ଉଠିଛି।

ଇଳାବୃତ୍ତ କବିଙ୍କ ରୋମାଣ୍ଟିକ ଭାବାନୁଭୂତିର ଏକ ମନୋରାମ ଆଲେଖ୍ୟ। ସେଥିରେ ଦୁଃଖବାଦ ଅପେକ୍ଷା ଗୋଟିଏ ପାରସିକ ନାରୀ କୈନ୍ଦ୍ରିକ ପ୍ରଣୟାନୁଭୂତିର ସ୍ୱର ଅଧିକ ତୀବ୍ର ହୋଇଛି।

ଇଳାବୃତ୍ତ ବସ୍ତୁତଃ ନିଛକ ରୋମାଣ୍ଟିକ ଚେତନା ଦୃଷ୍ଟିରୁ କବିଙ୍କ ମାଷ୍ଟର୍ ପିସ୍। ଏତେ ସ୍ୱତସ୍ଫୁର୍ତ୍ତ ଭାବ ଭାଷା ପ୍ରକାଶଭଙ୍ଗୀ କବିଙ୍କର ଅନ୍ୟ ସଂକଳନରେ ପରିଲକ୍ଷିତ ହୁଏ ନାହିଁ। ଇଳାବୃତ୍ତର ଛନ୍ଦ ମାଧୁରୀ ମଧ ଅନନ୍ୟ। ତାଙ୍କର ପ୍ରଣୟ ଚେତନା ଓ କଳ୍ପନା ବିଳାସ ଏତେ ରସ, ନିବିଡ଼ ଅଭିବ୍ୟକ୍ତି ଲାଭ କରିଛି ଯେ ଓଡ଼ିଆ କବିତାର ସୁଦୀର୍ଘ ଧାରାରେ ତା'ର ପଟାନ୍ତର ନାହିଁ। ଅନ୍ୟଭାଷାରୁ ଶବ୍ଦ ଆଣି ଏତେ ସୁନ୍ଦର ଓ ଅର୍ଥପୂର୍ଣ୍ଣ ଶବ୍ଦଯୁଗ୍ମ ନିର୍ମାଣ କରିଛନ୍ତି ଯେ ଇଳାବୃତ୍ତର କବିତାସବୁ ସେପାଇଁ ପାଠକକୁ ଆବିଷ୍ଟ କରିଦିଏ। ଏକ ପାରସିକ ଠାଣି ତାଙ୍କ ଇଳାବୃତ୍ତର କବିତାଗୁଡ଼ିକରୁ ବାରିହୋଇ ପଡ଼େ।

କବି ବିନୋଚନ୍ଦ୍ର ନାୟକଙ୍କ ଅନ୍ୟଏକ କବିତା ସଂକଳନ ହେଉଛି *'ଅନ୍ୟ ଏକ ଅସରପି।'* ଏଥିରେ ରହିଛି *'ଦୁଇନାରୀ'* ପରି ଏକ ଦୀର୍ଘତମ କବିତା। ପ୍ରଣୟିନୀ ଓ ପରିଣୀତାଙ୍କ କଥୋପକଥନକୁ ନେଇ ତାଙ୍କର 'ଦୁଇ ନାରୀ' ପରି ଦୀର୍ଘ କବିତାଟି ରଚିତ ହୋଇଛି। ପ୍ରେମ ପ୍ରଣୟର ହୃଦୟ ଭର୍ତ୍ତି ଭାଷାରେ କବିତାଟି ପରିପୁଷ୍ଟ ହୋଇଛି। କବିଙ୍କ ସୃଜନ ଅନୁଭବ, ଜୀବନ ଦୃଷ୍ଟି ତଥା ସୁଗଭୀର ପ୍ରଣୟ ଚେତନା କବିତାଟିର ଛତ୍ରେ ଛତ୍ରେ ବିନ୍ୟସ୍ତ ହୋଇଛି, ଆପଣା ଅନ୍ତରକୁ ସେ ଏଇ କବିତା ଦୁଇଟିରେ ଉନ୍ମୁକ୍ତ କରି ଦେଇଛନ୍ତି। ତାଙ୍କ 'ଦୁଇ ନାରୀ' କବିତାରେ ସୁତୀବ୍ର ପ୍ରଣୟ ଚେତନାର ସରସ ଅଭିବ୍ୟକ୍ତି ତ ହୋଇଛି, ତାବାଦ୍ ସେ ତାଙ୍କ କଳାଦୃଷ୍ଟିକୁ ମଧ ଏହି କବିତାରେ ସୂଚୀତ କରିଛନ୍ତି।

'ଯେ କବିତା ଲେଖା ହୁଏ ଏଇ ମୃତ୍ତିକାର
ଅତ୍ୟନ୍ତ ଦରିଦ୍ର ଶୂନ୍ୟ ଅନ୍ତିକ ସଂସାର।
ଯେଉଁ ଅଶବ୍ଦ ଶବଦ ସ୍ୱର୍ଗ ବୀଣା ତାରେ
ନିତ୍ୟ ଅନାହତେ ବାଜେ ଅଶ୍ରୁତ ଝଙ୍କାରେ
ସେ ଶବ୍ଦ ସ୍ଖଳିତ ଜ୍ୟୋତି ନକ୍ଷତ୍ର ସମାନ
ଭସ୍ମ ହୁଏ ଧରିତ୍ରୀରେ ଅଶ୍ରୁ ଶୋକେ ମ୍ଳାନ।''

## ପ୍ରାଥମିକ ପର୍ଯ୍ୟାୟର ସ୍ୱୈରବାଦୀ କବିତା

କବି ବିନୋଦ ନାୟକ ତାଙ୍କ ପ୍ରାଥମିକ କବି ଜୀବନରେ ଥିଲେ ବିଶିଷ୍ଟ ସ୍ୱୈରବାଦୀ କବି। ତାଙ୍କ ସ୍ୱୈରବାଦୀ ଚେତନାର ପରିସର ଅତ୍ୟନ୍ତ ବ୍ୟାପକ ଥିଲା। ସେ ଦୂର ନିର୍ଜନ ପୃଥିବୀର ଚିତ୍ର ଆଙ୍କିଛନ୍ତି ତ କେତେବେଳେ ପୁଣି ଦୂରସ୍ଥ ଭୂଗୋଳ ପ୍ରତି ସ୍ୱତଃ ଆବିଷ୍ଟ ହୋଇପଡ଼ିଛନ୍ତି।

କବି ବିନୋଚନ୍ଦ୍ର ନାୟକ ଥିଲେ ଓଡ଼ିଶାର ସୁଦୀର୍ଘ କାବ୍ୟ ପରଂପରାରେ ଶ୍ରବଣ–ସୁଖ–ଦାୟକ ଛନ୍ଦ ରଚନା କରିଥିବା ଓ ଅପୂର୍ବ ସାଂଗୀତକତାର ତନ୍ମୟତା ସୃଷ୍ଟି କରିପାରିଥିବା ଜଣେ ବିଶିଷ୍ଟ ସ୍ୱୈରବାଦୀ କବି। ସେ ଥିଲେ ଓଡ଼ିଆ ସାହିତ୍ୟର ମାନସିଂହ ଯୁଗର ଜଣେ ପ୍ରମୁଖ କବି। ଏତେ ସୁନ୍ଦର ଛନ୍ଦ, ଏତେ ଲଳିତ ପଦ ଯୋଜନା, ଏତେ ମଧୁର ଶୃଙ୍ଗାରିକ ବ୍ୟଞ୍ଜନା, ତାଙ୍କ ସମୟର ଅନ୍ୟ କୌଣସି କବିଙ୍କ କବିତାରେ ପ୍ରାୟ ପରିଲକ୍ଷିତ ହୁଏନି।

କବି ଥିଲେ ବସ୍ତୁତଃ ଅତୀନ୍ଦ୍ରିୟ କଳ୍ପନାର ସ୍ତାବକ । ଥିଲେ ପ୍ରାଣରେ ଅଧିକ ଭୂମି ସଂଲଗ୍ନ। ସେ ଥିଲେ ପ୍ରକୃତରେ ମାଟି ଓ ଆକାଶର କବି। ମାଟି ଥିଲା ତାଙ୍କର ଯେତିକି ପ୍ରିୟ, ସେତିକି ପ୍ରିୟ ଥିଲା ତାଙ୍କର ଆକାଶ।

ତାଙ୍କ ପ୍ରାଥମିକ କବି ଜୀବନର ସ୍ମାରକୀ ୧୯୩୩ଖ୍ରୀ.ରେ ସବୁଜ ସାହିତ୍ୟ ସମିତି ଦ୍ୱାରା ପ୍ରକାଶିତ ହୈମନ୍ତୀ ସଙ୍କଳନର କବିତା ଗୁଡ଼ିକରେ ବିଶେଷ ଭାବେ ଅଙ୍କିତ। ୧୯୩୪ ଖ୍ରୀରୁ ୧୯୪୧ ଖ୍ରୀ ମଧ୍ୟରେ କବିଙ୍କର ଅନେକ କବିତା ଓଡ଼ିଶାର ପ୍ରତିଷ୍ଠିତ ସାହିତ୍ୟ ପତ୍ର ସହକାର, ନବଭାରତ, ନବୀନ, ଯୁଗବାର୍ତ୍ତା ଡଗର ଆଦିରେ ପ୍ରକାଶିତ।

*'ହୈମନ୍ତୀ'* ପ୍ରକାଶିତ ହେଲାବେଳେ କବିଙ୍କର ବୟସ ଅତି ଅଳ୍ପ ଥିଲା। ସେ ସେତେବେଳକୁ ଅଷ୍ଟମ ଶ୍ରେଣୀର ଛାତ୍ର ଥିଲେ ମାତ୍ର। ସେ ସେତେବେଳେ ପୂର୍ବସୂରୀମାନଙ୍କୁ ବିଶେଷ ଭାବେ ଅନୁସରଣ କରି କବିତା ରଚନା କରିବା ପାଇଁ ଚେଷ୍ଟା କରିଥିଲେ। ପରିପକ୍ୱତା ଅଭାବରୁ ତାଙ୍କ କବିତାରେ ଦୃଷ୍ଟିଭଙ୍ଗୀଗତ ବହୁ ସଂଶୟ ଓ ସ୍ୱବିରୋଧ ଜଟିଳତା ପରିଲକ୍ଷିତ।

ତାଙ୍କର *'ବିଦାୟ ବିପ୍ଳବ'* (୧୯୩୪) ଓ *'ପରାଜୟ'* (୧୯୩୯) ମଧ୍ୟରେ ଆପାତ୍ ବିରୋଧୀ ଭାବଧାରା ପରିଦୃଷ୍ଟ। ପରାଜୟକୁ ସେ ନବୀନ ଉତ୍ସାହର ଅର୍ଚ୍ଚନା ବୋଲି ବର୍ଣ୍ଣନା କରିଛନ୍ତି। ଏହି ସମୟରେ ସେ ଓଡ଼ିଶାର ସୁପରିଚିତ ସବୁଜକବି କାଳିନ୍ଦୀ ଚରଣ

ପାଣିଗ୍ରାହୀ ଓ ଅନ୍ନଦାଶଙ୍କର ରାୟଙ୍କ ଦ୍ୱାରା ବିଶେଷ ଭାବେ ପ୍ରଭାବିତ ହୋଇଛନ୍ତି ବୋଲି ଜଣା ପଡ଼େ।

କବି ବିନୋଦ ଚନ୍ଦ୍ର ନାୟକଙ୍କ ଉପରେ ତାଙ୍କ କବି ଜୀବନର ଆଦ୍ୟରୁ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ଓ ମାୟାଧର ମାନସିଂହଙ୍କର ପ୍ରଭାବ ପରିଲକ୍ଷିତ। ୧୯୩୩ରେ ପ୍ରକାଶିତ ତାଙ୍କର *'ଅଶ୍ରୁର ଅର୍ଘ'* କବିତାଟି ସବୁମତେ ମାୟାଧର ମାନସିଂହଙ୍କ ଧୂପ କବିତାର 'ଶୁଣିବ ଯେବେ ପ୍ରିୟାଗୋ ମୋର/ପ୍ରଣୟୀତବ ଜଗତେ ନାହିଁ/ଆସିବ ମୋର ଭସ୍ମପାଶେ/ଦେବ ଗୋ ତାରେ ଦେହର ଛାଇ' କବିତା ଅନୁସରଣରେ ରଚିତ ହୋଇଛି। କବି ବିନୋଚନ୍ଦ୍ର ନାୟକଙ୍କର *'ମନ୍ଦିରଲଗ୍ନ'*, *'ଅମୁହାଁ ଦେଉଳ'*, *'ଭଙ୍ଗା ଦେଉଳ'*, *'ନୀରାଜନା'* କବିତା ଗୁଡ଼ିକରେ ମାୟାଧର ମାନସିଂହଙ୍କର କବିତାର ଭାବ ଭାଷା ଅନୁସୃତ ହୋଇଥିବା ମନେହୁଏ।

ସେ ତାଙ୍କ ଆଦ୍ୟ କବି ଜୀବନରେ ବଙ୍ଗଳା, ହିନ୍ଦୀ ଓ ଇଂରାଜୀ ସାହିତ୍ୟ ପଢ଼ି କବିତା ରଚନା କରିବା ପାଇଁ ପ୍ରେରଣା ଲାଭ କରିଥିଲେ। କାଳିନ୍ଦୀଚରଣ ଓ ସବୁଜମାନେ ଯେପରି ରବୀନ୍ଦ୍ରନାଥଙ୍କ ଭାବଧାରା ଦ୍ୱାରା ଉଦ୍‌ବୁଦ୍ଧ ହୋଇଥିଲେ ବିନୋଦଚନ୍ଦ୍ର ନାୟକ ମଧ୍ୟ ସେହିପରି ରବୀନ୍ଦ୍ରନାଥଙ୍କ ମାନବବାଦୀ କାବ୍ୟଚେତନା ଦ୍ୱାରା ବିଶେଷ ଭାବେ ପ୍ରୋତ୍ସାହିତ ହୋଇଥିଲେ। ମଣିଷ ଜୀବନକୁ ମହାର୍ଘ ମନେକରିବାର ବିପୁଳ କାବ୍ୟ ଆବେଗ ସେତେବେଳକୁ ଉଭୟ ବଙ୍ଗଳା ଓ ଓଡ଼ିଆ ସାହିତ୍ୟରେ ପ୍ରତୀକିତ ହେଲାଣି।

ଓଡ଼ିଶାର ବୈକୁଣ୍ଠ ନାଥ ପଟ୍ଟନାୟକ ଶରତ ଚନ୍ଦ୍ର ମୁଖାର୍ଜୀ ଅନ୍ନଦାଶଙ୍କରରାୟ, କାଳିନ୍ଦୀଚରଣ ପାଣିଗ୍ରାହୀ ପ୍ରମୁଖ ସବୁଜ କବିମାନଙ୍କ ସହିତ ମାୟାଧର ମାନସିଂହ, ସଚ୍ଚିଦାନନ୍ଦ ରାଉତରାୟ ଓ ବିନୋଦ ଚନ୍ଦ୍ର ନାୟକ ରବୀନ୍ଦ୍ର କାବ୍ୟ ଭାବନା ପ୍ରତି ଉନ୍ମୁଖତା ପ୍ରଦର୍ଶନ କରିଥିଲେ।

ଭବାନୀଶଙ୍କର ଉଚ୍ଚବିଦ୍ୟାଳୟର ଅଷ୍ଟମ ଶ୍ରେଣୀର ଛାତ୍ର ଥିବାବେଳେ ୧୯୩୩ ମସିହାରେ 'ସହକାର' ସାହିତ୍ୟ ପତ୍ରିକାରେ ମୁଦ୍ରିତ *'ଅଶ୍ରୁର ଅର୍ଘ୍ୟ'* ବିନୋଦ ଚନ୍ଦ୍ର ନାୟକଙ୍କ ପ୍ରଥମ ପ୍ରକାଶିତ କବିତା। ବିନୋଦ ଚନ୍ଦ୍ର ନାୟକ ନାନା ଘାତ ପ୍ରତିଘାତ ଦେଇ ଓଡ଼ିଶାର ଜଣେ ବହୁମାନ୍ୟ ରୋମାଣ୍ଟିକ୍ କବି ଭାବେ ପ୍ରତିଷ୍ଠା ଅର୍ଜନ କରିଛନ୍ତି। ଅଗରିଆମାନେ ବସବାସ ପାଇଁ ଚିରସ୍ରୋତା ନଈକୂଳକୁ ହିଁ ବାଛିଥାନ୍ତି। ନଦୀକୁ ଭଲ ପାଇବା ଏହି ବଂଶଗତ ପୁରୁଷାନୁକ୍ରମିକ ଗୁଣ ତାଙ୍କ ଚେତନାକୁ ଯେପରି ସିକ୍ତ କରିଥିଲା। ଏକ ପାର୍ବତ୍ୟମୟ ପ୍ରଦେଶରେ ଜନ୍ମ ଗ୍ରହଣ କରିଥିବା କାରଣରୁ କି କ'ଣ ନଦୀ ସମୁଦ୍ର ପରି ଜଳଭାଗ ପ୍ରତି ତାଙ୍କ କଳ୍ପନାରେ ବେଶ୍ କିଛି ଉତ୍ସୁକତା ଥିଲା

ନାରୀ ଥିଲେ ଅଗରିଆ ପରିବାରର ସର୍ବମୟ କର୍ତ୍ତ୍ରୀ। ନାରୀକୈନ୍ଦ୍ରିକତା ବୋଧହୁଏ କବିଙ୍କ ଚେତନାରେ ସେପାଇଁ ପ୍ରମୁଖ ବିଷୟ ହୋଇଛି। ତାଙ୍କର ସର୍ବମୋଟ

ଏଗାରଗୋଟି କବିତା ସଙ୍କଳନ ପ୍ରକାଶ ପାଇଛି। କାଳ ଅନୁକ୍ରମଣିକା ଭିତ୍ତିରେ ସେଗୁଡ଼ିକ ହେଲା ହୈମନ୍ତୀ, ନୀଳଚନ୍ଦ୍ରର ଉପତ୍ୟକା, ଚନ୍ଦ୍ର ଓ ତାରା, ଇଳାବୃତ୍ତ, ନନ୍ଦାଦେବୀ, ସାତ ତାରାର ଦୀପ, ପୋହଳା ଦ୍ୱୀପର ଇତିକଥା, ଅନ୍ୟ ଏକ ଅସରୂପୀ, ସରୀସୃପ, ରାଜକୀୟ ନିଃସଙ୍ଗତା ଓ ଉଲ୍ଲଙ୍ଗ ରୁଦ୍ର। ସେ ତାଙ୍କ କବି ଜୀବନର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ମୁଖ୍ୟତଃ ଜଣେ ଉଚ୍ଛମାନର କବି ଥିଲେ। ଜଣେ ଇଂରେଜୀ ସାହିତ୍ୟର ଛାତ୍ର ଓ ଅଧ୍ୟାପକ ଭାବେ ଇଂରେଜୀ ସାହିତ୍ୟର ରୋମାଣ୍ଟିକ କବିମାନଙ୍କ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହେଉଥିଲେ। ତାଙ୍କ କବିତାର ରୋମାଣ୍ଟିକ ଚିନ୍ତାଧାରା କ୍ରମଶଃ ଦୂରକୁ ଦୂରକୁ ମେଲି ଯାଇଛି। ସେ ବିଶ୍ୱର ମହାଜୀବନ ଓ ମହାଦିଗନ୍ତ ପ୍ରତି ନିଜର ଅନୁରକ୍ତି ବ୍ୟକ୍ତ କରିଛନ୍ତି। ତାଙ୍କର ଗଭୀର ରସବୋଧ ଓ ତତ୍ ଜନିତ ମାର୍ମିକତାର ପଟାନ୍ତର ନାହିଁ। ସେ ଓଡ଼ିଶାର ରୋମାଣ୍ଟିକ କାବ୍ୟଧାରାରେ ଯେପରି ଶିଶୁ ସେହିପରି ବୃଦ୍ଧ ମଧ। ତାଙ୍କ ରୋମାଣ୍ଟିକ ଚେତନାର ଉତ୍ତରଣ ଓଡ଼ିଶାର ସାରସ୍ୱତ ଜଗତରେ ଏକ ସୁଦୀର୍ଘ ଇତିହାସ। ତାଙ୍କ ବାଦ୍‌ସାହୀ ଢ଼ଙ୍ଗରେ ପ୍ରଣୟ ନିବେଦନ ଓ ପ୍ରେମ ପାଇଁ ତାଙ୍କର ଅନ୍ତରର ଅଶେଷ ବ୍ୟାକୁଳତା ନିମିତ୍ତ ତାଙ୍କୁ ଅନେକ ବିନୋଦପ୍ରେମୀ ତାଙ୍କୁ ଓଡ଼ିଶାର ଓମର୍‌ଖାୟାମ୍ ବୋଲି ଅଭିହିତ କରିଥାନ୍ତି।

ଉଭୟ ରୂପ ଓ ଅରୂପର କବିଥିଲେ ବିନୋଦ ଚନ୍ଦ୍ର ନାୟକ। ତାଙ୍କ କବିତା ଥିଲା ଯେପରି ଦେହକୈନ୍ଦ୍ରିକ ସେହିପରି ତାହା ବିଦେହୀ। ସେ ଯେଉଁ କାବ୍ୟ ନାୟିକା ସବୁ ସୃଷ୍ଟି କରିଛନ୍ତି, ସେହିମାନଙ୍କ ଭିତରୁ ଅନେକ ପରକୀୟା ତ କେତେକ ସ୍ୱକୀୟା ତାଙ୍କର ନିଃସଙ୍ଗତା ସୁବୋଧ ପ୍ରଣୟ ଜନିତ ତାଙ୍କର ଏକାକିତ୍ୱବୋଧ ମଧ ବିରହ ସଂପ୍ରେରିତ। ତାଙ୍କର ନିଃସଙ୍ଗତା ଜନିତ ବେଦନାବୋଧ ବରଂ ବହୁ ଭାବରେ ସାମନ୍ତୀୟ। ପ୍ରଣୟର ବିଳାସ ପାରସିକ ସମ୍ରାଟଙ୍କ ପରି ଅତିମାତ୍ରାରେ ବାଦ୍‌ସାହୀ।

ବିନୋଦ ନାୟକଙ୍କ ପଳାୟନ ପ୍ରବଣତା ଆଦୌ ଆବଶ୍ୟକତା ଜନିତ ନୁହେଁ। ଏମିତି କିଛି ଖାସ୍ ପାର୍ଥିବ ପୀଡ଼ା ବା ସନ୍ତାପ ପାଇଁ ତାଙ୍କର ପଳାୟନ ମନୋବୃତ୍ତି ସୃଷ୍ଟି ହୋଇଥିଲା। ତାଙ୍କ କବି ଚିତ୍ତରବ୍ୟାକୁଳତା କେବଳ ପ୍ରଣୟମଦିରା ପାନ କରିବା ପାଇଁ। ତାଙ୍କ କବିତାର ଚମତ୍କାରିତା ଉଚ୍ଚତମ ସୌନ୍ଦର୍ଯ୍ୟାନୁଭୂତିରେ ନିହିତ। କେବଳ ଉତ୍ତମ ଛନ୍ଦଯୋଜନା ଓ ବଚନ ବୈଦଗ୍‌ଧରେ ନିହିତ ନୁହେଁ। *ଚନ୍ଦ୍ର ଓ ତାରା, ପୋହଳା ଦୀପର ଉପକଥା ହୈମନ୍ତୀ, ନୀଳଚନ୍ଦ୍ରର ଉପତ୍ୟକା* ଓ *ନନ୍ଦାଦେବୀର* ରୋମାଣ୍ଟିକ କବିଭାବେ ଓଡ଼ିଆ କବିତା ସୃଷ୍ଟିଧାରାରେ ସେ ବିଶେଷ ବିଖ୍ୟାତ। ଅସୀମ ପ୍ରତି ବ୍ୟାକୁଳତା ରୋମାଣ୍ଟିକ କବିତାର ଅନ୍ୟତମ ଗୁଣ ଓ ଲକ୍ଷଣ, ଯାହା ସବୁଜମାନଙ୍କ ପରେ ଅତିମାତ୍ରାରେ ଜଣେ ବିନୋଦ ନାୟକଙ୍କ କବିତାରୁ ପଢ଼ିପାରେ।

କବି ବିନୋଦ ଚନ୍ଦ୍ର ନାୟକଙ୍କର ଉଭୟ ପ୍ରକୃତି ଚେତନା ଓ ନାରୀ ଚେତନା ଇନ୍ଦ୍ରିୟଗ୍ରାହୀ। ତାଙ୍କର ଉଚ୍ଚସ୍ତରର ସୌନ୍ଦର୍ଯ୍ୟାନୁଭୂତି ଏକ ଅପୂର୍ବ ଉନ୍ମାଦକାତ ସୃଷ୍ଟି

କରିଛି। ତାଙ୍କର କାବ୍ୟିକ ପଦଯୋଜନା ଯେପରି ସୁନିର୍ବାଚିତ ଓ ଅର୍ଥପୂର୍ଣ୍ଣ ସେହିପରି ସାଙ୍ଗୀତିକ ଓ ଶ୍ରୁତିମଧୁର। ତାଙ୍କ କବିତାର ଛନ୍ଦ, ତାଙ୍କ ପ୍ରଣୟ ବିଳାସର ସଙ୍କେତ ବହନ କରେ। ରବୀନ୍ଦ୍ରନାଥ ଛନ୍ଦକୁ ବାହ୍ୟିକ ସାତ୍ତ୍ୱିକ ଶୃଙ୍ଖଳା ବୋଲି ନ କହି କବି ଆତ୍ମାର ପ୍ରେରଣାତ୍ମକ ସଙ୍କେତ ବୋଲି କହିଛନ୍ତି। ଛନ୍ଦର ଯାଦୁକାରୀ ପ୍ରଭାବ ବିନୋଦ ଚନ୍ଦ୍ର ନାୟକଙ୍କର ଏକ ବଡ଼ ଅଂଶ।

ଜନ୍ କିଟ୍ସଙ୍କ ଇନ୍ଦ୍ରିୟଗ୍ରାହ୍ୟ, ସୌନ୍ଦର୍ଯ୍ୟାନୁଭୂତି ତଥା ପ୍ରେମାନୁଭୂତି, ପ୍ରାଣର ଯେଉଁ ନିଃସର୍ତ୍ତ ସମର୍ଥନ ପାଇଥିଲା, ବିନୋଦ ନାୟକଙ୍କ କବିତା ସେହିପରି ତାଙ୍କ କବି ଆତ୍ମାରୁ ଯେପରି ଉତ୍ସାନ୍ତରିତ ହୋଇଛି।

କବି ତାଙ୍କର ପ୍ରାଥମିକ ଜୀବନରେ ସୁଦୂର ପ୍ରତି ମୋହାଚ୍ଛନ୍ନ ହୋଇ ପଡ଼ିଥିଲେ। ସେପାଇଁ ତାଙ୍କ ଆବେଗ ଅଧିକାଂଶରେ ରହସ୍ୟବିଜଡ଼ିତ ମନେ ହୁଏ। ସେ ଆକାଶମୁଖୀ ହୋଇ ମାଟିର ବନ୍ଦନା କରିଛନ୍ତି। ସେ ତାଙ୍କ କାବ୍ୟ ଭାବନାରେ ଯେମିତି ଥିଲେ ରୋମାଣ୍ଟିକ୍ ସେହିପରି ମାନବୀୟ ସଂପ୍ରୀତିରେ ସେ ଥିଲେ ବାସ୍ତବବାଦୀ।

କବି ବିନୋଦ ଚନ୍ଦ୍ର ନାୟକ ମାଡ଼ାଗାସ୍କାର ବର୍ଷାଭିଜା ଲବଙ୍ଗ କ୍ଷେତ, ଅଷ୍ଟ୍ରେଲିଆର ନାଗଫେଣୀ ମରୁ ପ୍ରାନ୍ତର, ବେଦୁଇନ ଦେଶର ଭ୍ରାମ୍ୟମାଣ ଯାଯାବର, ସୁମେରୁ ଏସ୍କିମୋ କୁଟୀରର ଚିତ୍ର ଆଙ୍କି ଆପଣାର ଦୂରଦେଶୀ ଭାବ ଉନ୍ମୁଖତାର ପ୍ରମାଣ ଦେଇଛନ୍ତି। ସୁଦୂରର ସଙ୍ଗୀତ ତାଙ୍କ କବିତାକୁ ଅଧିକ ରହସ୍ୟ ବିଜଡ଼ିତ ଓ ମାଦକଭରା କରିଛି। ଶ୍ରୀ ନାୟକ ହେଉଛନ୍ତି ଓଡ଼ିଶାର ଏକମାତ୍ର କବି ଯିଏ ଦୂରତମ ଭୂଗୋଳର ଲେଣ୍ଡସ୍କେପ୍‌କୁ ଚିତ୍ରଣ କରିଛନ୍ତି। ନିଜ ଗାଁର ନଈ ଅପେକ୍ଷା ଦୂର ଦେଶର ନଈ ତାଙ୍କ କବି ଚିତ୍ତକୁ ସତେ ଯେପରି ଅଧିକ ଆକୃଷ୍ଟ କରିଛି। ଏଥିପାଇଁ ତାଙ୍କୁ କେତେଜଣ ବିଦ୍ରୁପ ମଧ କରିଛନ୍ତି। ଅଥଚ ଅନେକ ତାଙ୍କର ଏହି ରୋମାଣ୍ଟିକ୍ ବିଳାସିତାକୁ ଉଚ୍ଛ୍ୱସିତ ପ୍ରଶଂସା କରିଛନ୍ତି।

*'ଗୋଟିଏ ବସନ୍ତର ସଂଧ୍ୟା' 'ନାରୀ', 'ହେମନ୍ତ', 'ବିଦାୟ', 'ଅଭିନୟ'* ଆଦି କବିତାରେ ତାଙ୍କ ରୋମାଣ୍ଟିକ କାବ୍ୟ ମାନସର ଚିହ୍ନ ମୁଦ୍ରିତ। ୧୯୪୧ରେ ରଚିତ *'ମାଳି'* କବିତାରେ ତାଙ୍କର ନୂତନ ଦୃଷ୍ଟିଭଙ୍ଗୀ ସୂଚିତ। ସେ ନିଜ ନିକଟତମ ଲୋକାଳୟର ଚିତ୍ର ଦେବାବେଳେ ଦୈନ୍ୟ, ଦୁର୍ଭିକ୍ଷ, ରୋଗ, ଶୋକ, ମହାମାରୀ ଆଦିର ଚିତ୍ର ନ ଆଙ୍କି ସେ ସେହି ଜନ ପଦର ପ୍ରକୃତିକୁ ହିଁ ନାନା ଭାବରେ ଚିତ୍ରଣ କରିଛନ୍ତି । ଅଥଚ ଅଧିକାଂଶ କବିତାରେ ତାଙ୍କର ମାନବତାବାଦୀ ଚେତନା ଲକ୍ଷିତ ହୋଇଥାଏ।

ସେ ଜୀବନ ଭୋଗର ଜୟଗାନ କରିଛନ୍ତି। ମିଳନ ଓ ପ୍ରେମର ପ୍ରୀତିପ୍ରଦ ଉଲ୍ଲାସକୁ ସମର୍ଥନ କରିଛନ୍ତି। ସେହିଦୃଷ୍ଟିରୁ ସେ ପ୍ରଚଣ୍ଡ ଜୀବନବାଦୀ। ଜୀବନ ପାଇଁ ସେ ଆହୁରି ସୁନ୍ଦରତମ ପୃଥିବୀର କଳ୍ପନା କରିଛନ୍ତି। ତାଙ୍କ ଦୂର ନିର୍ଜନ ପୃଥିବୀର ଚିତ୍ର ତାଙ୍କ ଜୀବନପ୍ରିୟତାର ଲକ୍ଷଣ।

ସେ ମାଟିର କବି, ଆକାଶର କବି, ସେ ଜଳ, ସ୍ଥଳ ଓ ନଭମଣ୍ଡଳ ସବୁଥିର ଚିତ୍ରକର। ତାଙ୍କର ଜୀବନବାଦୀ ଉଚ୍ଚାରଣକୁ ଯେପରି ସ୍ୱୀକାର କରାଯିବ, ସେହିପରି ତାଙ୍କର ରୋମାଣ୍ଟିକ ସ୍ୱପ୍ନବିଳାସତାକୁ ମଧ୍ୟ।

କବି ତାଙ୍କର୍ ସାତ ତାରାର ଦୀପରେ ଆପଣା ଅନ୍ତରର ଆକାଂକ୍ଷାକୁ ଢ଼ାଳିଦେଇଛନ୍ତି । ସେ ତାଙ୍କର ଆକାଶୀ ମନକୁ ଦୂର ଦିଗ୍‌ବଳୟ ଆଡ଼େ ଉଡ଼ାଇ ଦେଇଛନ୍ତି। ସେ ଆପଣାକୁ ପରିଶ୍ରାନ୍ତ ମନେ କରିଛନ୍ତି, ଅଥଚ ପ୍ରଣୟର ପଣତ ଛାୟାକୁ ଆବୋରି ବସିଛନ୍ତି। ସେ ପୃଥିବୀକୁ ବେଳେ ମାୟା ମରୀଚିକା ବୋଲି ମନେ କରିଛନ୍ତି। ସେ ପରକୀୟାକୁ ଏକାନ୍ତ ଅସ୍ଥିର ଅଳ୍ପାୟୁଷ ମନେ କରିଛନ୍ତି। ତାଙ୍କର *'କାଗଜର ଫୁଲ'* କବିତାର ଆସ୍ୱାଦନ ଭିନ୍ନ। ଗନ୍ଧହୀନ କାଗଜର ଫୁଲ ପରି ବେଳେ ନାରୀର ଆବିର୍ଭାବ ହୋଇଥାଏ। ଅଥଚ ଭଅଁରର ମନ ନେଇ ବେଳେବେଳେ ମଧୁ ସନ୍ଧାନ ପାଇଁ ସେ ଫୁଲର ମହକ ଖୋଜିଥା'ନ୍ତି। କାଗଜ ଫୁଲରେ ସେ ଗନ୍ଧଉଚ୍ଛଳା ସୌରଭ ନଥାଏ।

ସେହି ସାତ ତାରାର ଦୀପ କବିତା ଗ୍ରନ୍ଥର ସନ୍ନିବେଶିତ *'ଅନ୍ଧକାରର କାବ୍ୟ'* ଏକ ସଫଳ କବିତା 'ତୁମେ ନଦୀ କ୍ଷିପ୍ରଗତି' କବିତାଟି ସେହିପରି ଏକ ଆତ୍ମାଭାବ କଥନ ସର୍ବସ୍ୱ କବିତା। ସେ *'ତୁମେ ନଦୀ କ୍ଷିପ୍ରଗତି'* କବିତାର ପରିସମାପ୍ତିରେ ଆପଣାକୁ ପ୍ରେମିକା ନିକଟରେ ସମର୍ପିତ କରି ଦେଇଛନ୍ତି। ସେ ଲେଖିଛନ୍ତି।

''ହେ ସଖି! ନିସଙ୍ଗ ମୁହିଁ ତପ୍ତ ଦୀର୍ଘଶ୍ୱାସେ
କ୍ଷୋଭ ଓ ସଂତ୍ରାସେ
ତବ ପଥ ଚାହେଁ ବାରମ୍ବାର
ନିଠୁର ଜୀବନେ ମୋର କଠିନ ଧରଣୀ
ମାଗେ ଆଜି ବହ୍ନିର ବିଚାର।
ସଙ୍ଗ ଖୋଜି ପୁଷ୍ପ ଖୋଜି
ଅବିରାମ ପାଏ ମୁଁ ଆଘାତ
ଦିଗେ ଦିଶେ ଲୁବ୍‌ଧ ଦୃଷ୍ଟି ବ୍ୟଭିଚାର ମୂଢ଼ ଦୃଷ୍ଟିପାତ
ପଙ୍ଗୁ ମତେ କରେ ଆଜି, ସଖି!
ଏ ଜୀବନ ହଂସ ଆଜି ତୁମ ନୀଡ଼େ
ଅଭିସାର ମାଗେ
ସେଇ କଥା ଜାଣ କି କ୍ରୋଞ୍ଚକି।''

ବିନୋଦ ଚନ୍ଦ୍ର ନାୟକଙ୍କର ୧୯୫୧ରେ ପ୍ରକାଶିତ *'ନୀଳ ଚନ୍ଦ୍ରର ଉପତ୍ୟକା'* ପନ୍ଦରଟି କବିତାର ଏକ କବିତା ସଙ୍କଳନ, ଯେଉଁଥିରେ ତାଙ୍କର ସ୍ୱପ୍ନସଞ୍ଚାରି କାବ୍ୟମାନସର ପରିଚୟ ମିଳେ। ସେ 'ନୀଳ ଚନ୍ଦ୍ରର ଉପତ୍ୟକା'କୁ ତାଙ୍କର ପ୍ରଣୟ ଚେତନା ଓ ପ୍ରକୃତି ପ୍ରୀତିର ମାଧ୍ୟମ କରିଛନ୍ତି। ତାଙ୍କ ରୋମାଣ୍ଟିକ ସ୍ୱପ୍ନର ସାର୍ଥକତା

ବହନ କରିଛି *'ନୀଳ ଚନ୍ଦ୍ରର ଉପତ୍ୟକା'* ।

ତାଙ୍କ ସ୍ୱପ୍ନ-ପ୍ରବଣତା ଓ ରୋମାଣ୍ଟିକ କଳ୍ପନା ବିଳାସ ଏକ ବିଶିଷ୍ଟ ଦିଗ। ଫ୍ରଏଡ୍ ସ୍ୱପ୍ନକୁ ଗୋପନ ଇଚ୍ଛାର ପ୍ରତୀକିତ ରୂପ ବୋଲି ଯାହା କହିଛନ୍ତି। ବିନୋଦ ନାୟକଙ୍କ ସ୍ୱପ୍ନ ପ୍ରବଣ ମନର ଗୋପନ ଇଚ୍ଛାର କବିତା ରୂପକୁ ଦେଖିଲେ ତାହା ସତ୍ୟ ବୋଲି ମନେ ହେବ। ତାଙ୍କ କବିତାଗୁଡ଼ିକର ସଂରଚନା ଶୈଳୀ ଅଲଗା ଅଲଗା ହେଲେ ହେଁ ତାଙ୍କର ଭାବ ଚେତନାସବୁ କବିତା ମଧ୍ୟରେ ଏକ ସଂହତି ସ୍ଥାପନ କରିପାରିଛି। ସେ ଯେମିତି ଜଣେ ସ୍ୱପ୍ନପ୍ରବଣ ରୋମାଣ୍ଟିକ ଓଡ଼ିଆ କବି, ସେହିପରି ପରୀକ୍ଷା ନିରୀକ୍ଷାରେ ଆଗ୍ରହୀ ଜଣେ ଶିଳ୍ପସଚେତନ କବି।

ତାଙ୍କ କବିତାର ପ୍ରକୃତି ଅଧିକାଂଶରେ ଏକ ଉଦ୍ଦୀପକ ବିଭାବର କାର୍ଯ୍ୟନିର୍ବାହ କରିଛି। କବି ଶ୍ରୀ ନାୟକ ଆକାଶମୁଖୀ ହୋଇ ମାଟିର କବିତା ରଚନା କରିଛନ୍ତି ବୋଲି ସେ ଯାହା କହିଛନ୍ତି ତାହା ତାଙ୍କ କବିତାର ଗୁଣ, ଲକ୍ଷଣ ଦୃଷ୍ଟିରୁ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ। ସେ ତାଙ୍କ *'ଇନ୍ଦ୍ରାବୃତ୍ତ'* କବିତା ଗ୍ରନ୍ଥରେ ସଙ୍କଳିତ *'ଆକାଶର କବିତା'*ରେ ଲେଖିଛନ୍ତି--

''ସଖି ମୁହିଁ ଯେ ଆକାଶ ବିଳାସୀ
ଦୂର ତାରା ସଂଚିତ ଅୟନେ
ବସି ଲେଖେଁ ମୁଁ ମାଟିର କବିତା
ରୂପ ବିଳାସେ ମେଘର ଶୟନେ
କେବେ ଇନ୍ଦ୍ରଧନୁରୁ ରସେ
ଯାଏଁ ଉଡ଼ି ମୁଁ ପୁଲକ ରଭସେ।''

ସେ ଦୂର ଆକାଶରୁ ହୁଏତ ପୃଥିବୀକୁ ଦେଖିଥିବା କାରଣରୁ ପୃଥିବୀର ସେ ପୋହଳା ଦ୍ୱୀପ, ବେଦୁଇନର ଦେଶ, ସୁମେରୁର ସନ୍ଧ୍ୟା, ମାଡ଼ାଗାସ୍କରର ଲବଙ୍ଗ କ୍ଷେତ, ନୀଳ ଚନ୍ଦ୍ରର ଉପତ୍ୟକା, ନୀଳନଦୀ; ଆଦି ସ୍ୱପ୍ନିଳ ଭୂଗୋଳ ସବୁକୁ ଦେଖିଛନ୍ତି। ତାଙ୍କୁ ଏସବୁ ତେଣୁ ଏପରି ବିଭୋର କରିଛି ସେହିପରି ରହସ୍ୟମୟ ମନେ ହୋଇଛି।

*'ନୀଳ ଚନ୍ଦ୍ରର ଉପତ୍ୟକା'*ରେ କବିଙ୍କ ବିଶ୍ୱଦୃଷ୍ଟି ଅତ୍ୟନ୍ତ ସମୁଜ୍ଜ୍ୱଳ। ଚନ୍ଦ୍ର ସୂର୍ଯ୍ୟ, ତାରା, ବଣ, ପର୍ବତ, ନଦୀ, ଗିରି, ସମୁଦ୍ର, କେତେ ଶ୍ୟାମଳ ଭୂଧର ଉପତ୍ୟକା, ଚନ୍ଦ୍ରାଙ୍କିତ ରଜନୀ, କଳାରାତିର ନିବିଡ଼ ନୀର ଅନ୍ଧକାର, ବାରିବିକ୍ଷୁବ୍‌ଧ ସମୁଦ୍ର, ବର୍ଷା, ବିଦ୍ୟୁତର ଚିତ୍ରଣ ତାଙ୍କର *'ନୀଳ ଚନ୍ଦ୍ରର ଉପତ୍ୟକା'*କୁ କ୍ଲାସିକ୍ କବିତାର ଗୌରବ ପ୍ରଦାନ କରିଛି। ତାଙ୍କ କଳ୍ପନା ତୁଙ୍ଗିମାକୁ ଏହି କବିତା ସଙ୍କଳନରୁ କଳନା କରାଯାଇପାରେ। *'ନୀଳ ଚନ୍ଦ୍ରର ଉପତ୍ୟକା'*ର କଳ୍ପନା ଭୂମିଟି ଏତେ ବିସ୍ତୀର୍ଣ୍ଣ ଯେ ଓଡ଼ିଆ ସାହିତ୍ୟରେ ତା'ର ତୁଳନା ଅନ୍ୟତ୍ର ନାହିଁ।

ତାଙ୍କ କବିତାର କଳ୍ପନାର ଭୂମି ମାଟିରୁ ଆକାଶ ଓ ଆକାଶରୁ ମାଟି ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ। ତାଙ୍କ ଭାବ ଉଦ୍‌ବେଳନ ସେମିତି ଆକାଶମୁଖୀ ଓ ମହାଦିଗନ୍ତ ଆଡ଼କୁ ମେଲି

ଯାଇଛି। ତାଙ୍କ [illegible]ର ଭୂଗୋଳ ଯେପରି କାନ୍ତ ସେହିପରି ଭୀମ, ଯେପରି ଆତ୍ମୀୟ ସେହିପରି ରହସ୍ୟମୟ। ସମୁଦ୍ର କେଉଁଠି ମହାକାଳ ଓ ମୃତ୍ୟୁର ପ୍ରତୀକ ତ ପୁଣି କେଉଁଠି ବିସ୍ମୟ ଓ ସୀମାହୀନତାର ବିଷୟ। ସେ ଏହି ପୃଥିବୀର ମୃତ୍ୟୁ, ମହାମାରୀ ଓ ବିଭୀଷିକାକୁ ମଧ ଶୋଭାବନ୍ତ ଦୂର ସଞ୍ଚାରୀ ଭାବ ଭାବନା ସହିତ ମିଶାଇ ଲେଖିଛନ୍ତି।

ସେହିପରି ତାଙ୍କର *'ସାଧବ ଝିଅର ଗୋଟିଏ କଥା'* ଓ *'ମାଳଞ୍ଚ'* ଆଉ ଦୁଇଟି ସାର୍ଥକ ରୋମାଣ୍ଟିକ କବିତା । ଏହି ସାଧବ ଝିଅର ଗୋଟିଏ କଥା କବିତାଟି ଭିନ୍ନ ଏକ ସ୍ୱାଦର କବିତା କଳିଙ୍ଗର ସାଧବ କନ୍ୟା କନକଲତା ଜାପାନୀ ସାଗର ଉପକୂଳରେ ତା'ର ପିତାମହ ସହିତ ନୌଯାତ୍ରା କରୁଥିବାବେଳେ ସମୁଦ୍ରର ଝଡ଼ ଯୋଗୁଁ ସଲିଳ ସମାଧି ନେଇଛି। ଚୀନା ନାବିକମାନେ ତା'ର ଶବ ଉଦ୍ଧାର କରି ତୁଷାର ଭିତରେ କବର ଦେଇଛନ୍ତି। କବିତାଟି ଏକ ରୂପ କଥା ଯେଉଁଥିରେ ସମୁଦ୍ରର ପ୍ରଳୟଙ୍କରୀ ରୂପ ପ୍ରଦର୍ଶିତ ହୋଇଛି।

''ପ୍ରଳୟ ଶଙ୍ଖ ବାଜିଲା ଆକାଶେ
ମେଘେ ଚମକଇ ବିଜୁଳି ରେଖା
ଊର୍ମି ଉପରେ ଊର୍ମି ଉଠଇ
ତଟ ଭୂମି ନାହିଁ ଯାଏ ତ ଦେଖା
ସହସ୍ର ଫଣା ଟେକି ଫୁତ୍କାରେ
କାଳ ନାଗୁଣୀ କି ଆସଇ ଧାଇଁ
ଦୃଷ୍ଟି ଆସିଲା ଘୋଟେ ଅନ୍ଧାର
ସୃଷ୍ଟି ଶେଷର ରାତ୍ରି ଯଥା
ସାଧବର କୋଳେ ଆଉଜି ବସିଣ
ଅନାଇ ରହିଛି କନକ ଲତା।''

('ସାଧବ ଝିଅର ଗୋଟିଏ କଥା')

ତାଙ୍କର *'ସେଲିମ୍‌ର ସ୍ୱପ୍ନ'* ସେହପରି ଦୂରସ୍ଥ ଭୂମିକୁ ଚିତ୍ରଣ କରିଥିବା ଅନ୍ୟ ଏକ କବିତା। କବିତାଟି ମୂଳରୁ ଶେଷ ପର୍ଯ୍ୟନ୍ତ ଗୋଟେ ଦୂର ଦେଶର ଅପରିଚିତ ଭୂଗୋଳକୁ ଚିତ୍ରଣ କରିଛି। କବିତାଟିର ଆରମ୍ଭ ଏହିପରି।

'ମାଡ଼ାଗାସ୍କର ଲବଙ୍ଗ ଯେତେ ଆଦ୍ୟ ଆଷାଢ଼ ବାରି
ଆଲ୍ଲା ମେହର-ବାନି ସମ ଝିରପଡ଼େ,
ଲୋହିତ ସାଗରେ ମୌସୁମୀ ବାୟୁ ଝଡ଼ର ସୃଷ୍ଟି କରେ
ତାର ଇଙ୍ଗିତ ଧରି ବିଭାବରୀ ଆସେ
ଦିଗ ଅମ୍ବରୀ ନିଗ୍ରୋ ଯୁବତୀ ଯଥା
ଉପଳ ବ୍ୟଥିତ ଗତି ନାଇଜର ତୀରେ

କାମ ଉଦ୍‌ବେଗେ ଚଳେ ରତି ଅଭିସାରେ।
ଦିଗନ୍ତ ବ୍ୟାପୀ ଲବଙ୍ଗ କ୍ଷେତେ ଝିରିଝିରି ପଡ଼େ ଝରି
ତପନ–ବିହୀନ–ସଘନ ବରଷାଧାରା।
ଭିଜା ଜାୟତ୍ରୀ ଫୁଲର ଗନ୍ଧ ବହି
ଈଶାନୀ ସମୀର ବିତରି ଯାଅଇ ଉଡ଼ି
ଆରବ କୁଲୀର ପଲ୍ଲୀର ଅଭିମୁଖେ!'

ଦୂର ନିର୍ଜନ ପ୍ରକୃତି ଥିଲା ତାଙ୍କ କଳ୍ପନା ବିଳାସର କ୍ଷେତ୍ର। ଏତେ କଳ୍ପନା ବିଭୋରତା ଲକ୍ଷ୍ୟକରି ତାଙ୍କର ପାଠକ ବେଳେବେଳେ ବିସ୍ମିତ ହୁଏ। ଅଦେଖା ପୃଥିବୀକୁ ସେ ଏମିତି ଜୀବନ୍ତ କରି ଆଙ୍କି ଦେଇଛନ୍ତି ଯାହା ପାଠକକୁ ସ୍ୱତଃ ଆକୃଷ୍ଟ କରେ।

ତାଙ୍କ କଳ୍ପିତ ପୃଥିବୀ ସୁନ୍ଦର ଆଉ ଆନନ୍ଦମୟ। ତାଙ୍କ ସ୍ୱପ୍ନର ପୃଥିବୀ କ୍ଲେଦାନ୍ତ ନୁହେଁ, ଦାବ ଦହନ ବିଦ୍‌ଗଧ ନୁହେଁ। ସେ ବିରହକୁ ଚିତ୍ରଣ କରିଛନ୍ତି ବେଶୀ, ସତ, ସେ ବିଷାଦ ଓ ବେଦନାକୁ ପ୍ରେମାନୁଭୂତିରେ ମିଶାଇଛନ୍ତି ସତ, ହେଲେ କବି ବିନୋଦ ଚନ୍ଦ୍ର ନାୟକ ଆଦୌ ନୈରାଶ୍ୟବାଦୀ ନୁହନ୍ତି। ବରଂ ବହୁଭାବରେ ଆଶାବାଦୀ । ନାରୀ ଓ ପ୍ରକୃତିକୁ ସେ ସୌନ୍ଦର୍ଯ୍ୟ ଓ ପ୍ରେମର ସ୍ୱର୍ଗୀୟ ଉତ୍ସ କରି ଦେଖିଛନ୍ତି।

ସବୁଜ ମାନଙ୍କ ଠାରୁ ସେ ଟିକିଏ ଅଲଗା ପ୍ରକାରର। ତାଙ୍କ ନାରୀ ଓ ତାଙ୍କ ପ୍ରକୃତିଚିତ୍ର ଅଧିକ ଭାବନିଷ୍ଠ। ଭାବରେ ବିମୋହିତ କରି ଦେବାର ସମ୍ଭାବନାକୁ ନାରୀ ଓ ପ୍ରକୃତି ଭିତରେ ଦେଖିଛନ୍ତି ଯେପରି।

ତାଙ୍କ କାବ୍ୟ ଚେତନାର ଭୂମି ମୁଖ୍ୟତଃ ମାନବୀୟ ସମ୍ବେଦନଶୀଳତା ଉପରେ ଆଧାରିତ। ଊନବିଂଶ ଶତାବ୍ଦୀର ଇଂରାଜୀ ରୋମାଣ୍ଟିକ କବି ଫରାସୀ ବିପ୍ଳବ ଦ୍ୱାରା ତଥା ଋଷୋଙ୍କ ମାର୍ମିକବାଦୀ ଇସ୍ତାହାର ଦ୍ୱାରା ପ୍ରଭାବିତ ହୋଇ କହୁଥିଲେ ଯେ ମଣିଷ ବିବର୍ଜିତ ପ୍ରକୃତି ବନ୍ଧ୍ୟା (Without man the nature is barren) ମିଣଷକୁ ବାଦ ଦେଇ କବି ବିନୋଦ ଚନ୍ଦ୍ର ନାୟକଙ୍କ ଦୃଷ୍ଟିରେ ପ୍ରକୃତି ସେତେ, ଦୀପ୍ତ ଓ ସେତେ ବେଶୀ ଶୋଭାବନ୍ତ ନୁହେଁ।

ବିନୋଦ ଚନ୍ଦ୍ର ନାୟକଙ୍କ ପ୍ରକୃତି ପଲ୍ଲୀ ଆଧାରିତ ପ୍ରାୟ। ମାଁ ତାଙ୍କ ମଧୁର କବି କଳ୍ପନାର ଆଦିଭୂମି ଯେପରି।

କବି ମଣିଷ ଜୀବନକୁ ନ୍ୟୁନ ମନେକରି ପ୍ରକୃତିର ବନ୍ଦନା ଗୀତ ଗାଇ ନାହାନ୍ତି। ପ୍ରେମରେ କେବଳ ମଣିଷ ଜୀବନରେ ଚରମ ସାର୍ଥକତା ଅଛି ବୋଲି କବି ଉପଲବ୍ଧି କରିଛନ୍ତି।

'*ନୀଳଚନ୍ଦ୍ରର ଉପତ୍ୟକା*'ରେ କବି ବିନୋଦ ଚନ୍ଦ୍ର ନାୟକ ଅଧିକରୁ ଅଧିକ କଳ୍ପନାବାଦୀ। ଦୂର ଭୂଖଣ୍ଡ ଗୁଡ଼ିକୁ ସେ ଯେପରି ଚିତ୍ରଣ କରିଛନ୍ତି ଓ ଆପଣାର ପ୍ରଣୟ ବିଭୋର କବି ଚିତ୍ତର ପରିଚୟ ଦେଇଛନ୍ତି ତା'ର ତୁଳନା ନାହିଁ। ସ୍ୱପ୍ନ ସୃଷ୍ଟ ଜଗତ

ଚିର ସୁନ୍ଦର। ସେଥିରେ ସନ୍ତାପ ନାହିଁ। ପ୍ରଣୟ ପାଇଁ ନିତ୍ୟ ଅଭିସାର ସେଇଠି ଚାଲିଥାଏ। କବି ସେହି ଚିର ସୁନ୍ଦର ସବୁଜ ଜଗତକୁ ହିଁ ଚିତ୍ରଣ କରିଛନ୍ତି। *'ନୀଳ ଚନ୍ଦ୍ରର ଉପତ୍ୟକା'* ନାମ କରଣଟି ହିଁ ସେ ଦୃଷ୍ଟିରୁ ଅଧିକ ତାତ୍ପର୍ଯ୍ୟ ପୂର୍ଣ୍ଣ।

ଚେତନା ଦୃଷ୍ଟିରୁ *ନୀଳଚନ୍ଦ୍ରର ଉପତ୍ୟକା*ର କବିତା ଗୁଡ଼ିକ ଏକମୁଖୀ। ରୋମାଣ୍ଟିକ କଳ୍ପନା ବିଳାସ ଧାରାରେ ବିନୋଦ ଚନ୍ଦ୍ର ନାୟକ ଏକ ପ୍ରତିଷ୍ଠିତ ସୃଜନଶୀଳ ବ୍ୟକ୍ତିତ୍ୱ।

ବିନୋଦ ଚନ୍ଦ୍ର ନାୟକ ଆତ୍ମ ବିଭୋର ହୋଇ ଯେଉଁ ଦିନ କବିତା ଲେଖୁଥିଲେ ଓଡ଼ିଶାରେ ସେ ଦିନ ଥିଲା ସାହିତ୍ୟ ଇତିହାସରେ ଏକ ଯୁଗସନ୍ଧିର ସମୟ। ସେ ପଛରେ ଛାଡ଼ି ଆସିଥିଲେ ତରଳ ସବୁଜକାବ୍ୟ ଯୁଗକୁ ଆଉ ତାଙ୍କ ଆଗରେ ଥିଲା ପରୀକ୍ଷା ନିରୀକ୍ଷାର ବୁଦ୍ଧିନିଷ୍ଠ ଆଧୁନିକ କାବ୍ୟଯୁଗ, ଯାହାର ଯୁଗପ୍ରବର୍ତ୍ତକ କବିଥିଲେ ସଚ୍ଚିଦାନନ୍ଦ ରାଉତରାୟ। ସେହି ସନ୍ଧିକ୍ଷଣରେ ତଥାପି ବିନୋଦଚନ୍ଦ୍ର ନାୟକ ରୋମାଣ୍ଟିକ୍ କାବ୍ୟ ଚେତନାକୁ ପ୍ରତିଷ୍ଠା ଦେଇ ପାରିଥିଲେ। ସେତେବେଳକୁ ସାହିତ୍ୟର ଗଦ୍ୟ ବିଭାବ ବେଶ୍ ସମୃଦ୍ଧ ଥିଲା। ଗୋପୀନାଥ ମହାନ୍ତି କାହ୍ନୁ ଚରଣ ମହାନ୍ତି ଉପନ୍ୟାସ ସବୁ ପାଠକ ପାଠିକାଙ୍କ ସମୃଦ୍ଧି ଦୃଷ୍ଟି ଆକର୍ଷଣ କରି ପାରିଥିଲେ।

ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗ ଆରମ୍ଭ ହୋଇ ସାରିଥିଲା। ଉଭୟ ଗଦ୍ୟ ପଦ୍ୟ ରଚନାରେ ଆଧୁନିକ ସାହିତ୍ୟର ରୂପ ଗୁଣ ପରିଲକ୍ଷିତ ହୋଇଥିଲା। ବିନୋଦ ଚନ୍ଦ୍ର ନାୟକ ଠିକ୍ ସେତିକିବେଳେ ଓଡ଼ିଶାରେ ରୋମାଣ୍ଟିକ କବିତା ରଚନା କରୁଥିଲେ।

କବିଙ୍କର *'ନନ୍ଦାଦେବୀ'* ଓ *'ସାତତାରାର ଦ୍ୱୀପ'* ଯେତିକି ଓ ଯେପରି ରୋମାଣ୍ଟିକ ତାଠାରୁ ଅଧିକ ଉଗ୍ର ରୋମାଣ୍ଟିକ ହେଉଛି ତାଙ୍କର ପରବର୍ତ୍ତୀ କବିତା ସଙ୍କଳନ *'ନୀଳ ଚନ୍ଦ୍ରର ଉପତ୍ୟକା'* ।

କବି ଏତେ ଅସୀମ ଦୂରତାକୁ ଡେଇଁ ଯାଇ ଦୂରସ୍ଥ ଭୂଗୋଳକୁ ଅଭିଲିପିତ କରିଛନ୍ତି ଯେ, ତାଙ୍କୁ ଅନେକ ପାଠକ ସେପାଇଁ ଉଗ୍ର ରୋମାଣ୍ଟିକ ବୋଲି କହିଥାନ୍ତି।

ଏହି ପ୍ରସଙ୍ଗରେ କବିଙ୍କ ରଚିତ *'ଅଷ୍ଟ୍ରେଲିଆ'* ଓ *'ସମୁଦ୍ରର ସ୍ୱାଦ'* କବିତା ଦୁଇଟିକୁ ଉଲ୍ଲେଖ କରାଯାଇପାରେ, ଯାହା ତାଙ୍କ *ନୀଳ ଚନ୍ଦ୍ରର ଉପତ୍ୟକା*ରେ ସଙ୍କଳିତ ହୋଇଛି।

'ମେଷ ପଲ ନେଇ ଆସିଥିଲା ଏଥେ ଜଳ ସନ୍ଧାନୀ ମେଷପାଳକ ସେକେବେ
ଶବ ତା'ର ସଢ଼ି କରିଥିଲା ଥରେ ସଂକ୍ରମିତ ଏ ବାୟୁ
ତା'ରି କଙ୍କାଳ ଧବଳିତ କରି କ୍ରମେ ସୂର୍ଯ୍ୟରଶ୍ମି ଖରରେ ହୁଏ ନିତି
ଦ୍ୱିପ୍ରହରରେ ଗଭୀର କ୍ଷୁଧାରେ ପ୍ରେତାତ୍ମା ତା'ର ବୁଲେ
ଜଳ ଖୋଜି ଖୋଜି ଚିତ୍କାର ହାହାକାର
ଜଳହୀନ ଆଉ ଜନହୀନ ସେଇ ପଥେ।''

(ଅଷ୍ଟ୍ରେଲିଆ)

ସେହିପରି ଦୂରତମ ଭୂଗୋଳକୁ ଚିତ୍ରିତ କରିଥିବା ତାଙ୍କର ଅନ୍ୟଏକ କବିତା କବିଙ୍କ ସେହି *'ନୀଳଚନ୍ଦ୍ରର ଉପତ୍ୟକା'* ରୁ ।

'ହନଲୁଲୁ ଉପକୂଳେ
ଶାର୍କ ଶିକାରୀ ନାବିକ ଜଳବାହି ପୋତ ଭେଟି
ବିପରୀତ ଗାମୀ ଏକ ସାଗରିକ ସ୍ରୋତ
ସମୁଦ୍ର ସମାଧି ରଚିଥିଲା
ଧୌତ ତରଙ୍ଗରେ ନୀତି ଏ ଜୀବନ ଲୀନ, ଛିନ୍ନ ତରୀ କରିବା ଆଶ୍ରୟ
ତେଣୁ ଲାଗେ ପରମ ବିସ୍ମୟ।

(*'ସମୁଦ୍ରର ସ୍ୱାଦ'*)

*'ନନ୍ଦାଦେବୀ'* (୧୯୬୨) କବିଙ୍କର ଅନ୍ୟ ଏକ ରୋମାଣ୍ଟିକ ସୃଷ୍ଟି। ସେ ଏଠାରେ ଅଧିକ ସ୍ୱପ୍ନଚାରୀ।

କବି ଆପଣା ଜୀବନର ମୋହଭଙ୍ଗ ସବୁକୁ ତାଙ୍କ *'ନିଶିର ଡାକ'* କବିତାରେ ଦେଖାଇଛନ୍ତି। ଯେଉଁ ବିମୋହିନୀ ଜଣକ ରମଣରେ କାଲି ମୁଗ୍‌ଧ କରୁଥିଲା, ଆଜି ତା ଓଠରୁ ଅମୃତ ନୁହେଁ ଗରଳ ହିଁ ଝରୁଛି। ନାରୀ ପ୍ରେମର ଏହି ବିଡ଼ମ୍ବିତ ଦିଗଟିକୁ କବି ଦେଖାଇଛନ୍ତି:

'ଓଠରେ ତୁମର ଜ୍ୱାଳା ଦେବ ସଏତାନୀ
ଯେ ତୁମ ପରଶେ ବାଟୋଇ ବୁଲଇ ଗ୍ରାମ
ଭୁଲେ ଘରଣୀର ପଣତ ତଳର ନିଦ
ଯେ ତୁମଇ ବିଷ ଦେହେ ଦହେ ଅବିରାମ।
ଧରାର ରୂପସୀ କେବେ
ସତୀ ହୋଇଛି କି କୁଣ୍ଠିତ ଦେହ ବହି
ଉଚ୍ଛିଷ୍ଟ ସୁରା ପ୍ରତିପାତ୍ରେ ସେ ଢ଼ାଳେ
କଳଙ୍କବତୀ ସେ ଏକ ଛଳନାମୟୀ।

(*'ନିଶିର ଡାକ'-ନନ୍ଦାଦେବୀ*)

ବିନୋଦ ଚନ୍ଦ୍ର ନାୟକଙ୍କର ଏକ ଅତି ଲୋକପ୍ରିୟ କବିତା ହେଉଛି *'ସାଗର ସଙ୍ଗମ'* ଯାହା ତାଙ୍କ *'ନନ୍ଦାଦେବୀ'* କବିତା ଗ୍ରନ୍ଥରେ ସଙ୍କଳିତ ହୋଇଛି, ଜୀବନ ନଦୀ ଧାଇଁଛି ମହୋଦଧି ସହିତ ଏକାର ହୋଇଯିବା ପାଇଁ। ନଶ୍ୱର ଏ ମଣିଷ ଜୀବନ ସେମିତି, ମହାକାଳରେ ଲୀନ ହେବାକୁ ସେ ନିରତ ଉଦ୍ୟତ। ଜୀବ ପରମରେ ବଡ଼ ସୂକ୍ଷ୍ମରେ ଯେପରି ଲୀନ ହୋଇଯିବ। କବି ଜୀବନର ପ୍ରୀତିଲୀଳାରେ ବି ଶାଶ୍ୱତକୁ ଖୋଜିଛନ୍ତି।

କବି ଲେଖିଛନ୍ତି:

ଝାଖରେ ଗଗରୀ, ରତିର ସାଗରୀ ଅଳସୀ ନାଗରୀ ଆସିଲା କେ
କଳଙ୍କିନୀ ସେ ନଗରୀ ସୀମାର ପାଖେପାଖେ, ପାଶୋରି ଦେ ତା'ରେ।
ଯିବ ଆଜି ଦୂରେ ସୁକୁମାରୀ
ଶୁଣ ଶୁଣ ତୋତେ ଘନ ନିର୍ଘୋଷେ କିଏ ଡାକେ ?
ଆଜି ହେବ ତୋର ମହାସଙ୍ଗମ
ଜଳ ଶଯ୍ୟାର ଜଳଧିର ତରଙ୍ଗଲତା ବାହୁ ବେଷ୍ଟନ
ଶୁଭ ଶଙ୍ଖର କଳଗୀର
ଫେନ ପୁଷ୍ପର ମାଳା ଦୋଳାଇବ
ପରମାରାଧ୍ୟ ମହୋଦଧି।
ଭୁଲି ଯା ସଜନୀ ଏ ମାଟି ମାୟାଲୋ
ବନମାୟା ଏଇ ଅବନୀର।

(*'ସାଗର ସଙ୍ଗମ', ନନ୍ଦାଦେବୀ*)

*'ନିଶିର ଡାକ'* କବିଙ୍କର ସେମିତି ଏକ ଉଲ୍ଲେଖ ଯୋଗ୍ୟ ରୋମାଣ୍ଟିକ୍ କବିତା। ଏହି କବିତାରେ ସେ ରାତିକୁ ଜଗତର ସବୁଠାରୁ ଆମୋଦଦାୟକ ରୋମାଣ୍ଟିକ୍ ସମୟ ବୋଲି କହିଥିଲେ ହେଁ ତାହା ବେଳେ ବେଳେ କରାଳ ରଜନୀ ଭଳି ମନେହେବ । ତାହା ସେତେବେଳେ ସେମିତି ଆଉ ଆକୃଷ୍ଟ କରି ପାରିବନି।

ରାତି ପ୍ରାଣରେ ସଙ୍ଗମ ବାସନାକୁ ବଢ଼ାଏ। ମଣିଷର ଦେହ ଭୋଗ ଲାଳସାକୁ ରାତି ଚରିତାର୍ଥ କରେ। ରାତି ସେପାଇଁ ତା'ର ସୁନ୍ଦର ପ୍ରତୀକ। ଅଥଚ ରାତି ବିରହର ଜ୍ୱାଳାକୁ ତୀବ୍ର କରେ ଯେଉଁଠି ପାଖରେ ସାଥୀ ନାହିଁ।

ଏହି କବିତାଟି ବିନୋଦ ନାୟକଙ୍କର ଅଧିକ ଓମାର ଖୟାମିକ।

*'ଦୁଇଟି ନୀଳ କସ୍ତୁରୀର ତାରା'* ବିନୋଦ ନାୟକଙ୍କର ଅନ୍ୟ ଏକ ସାର୍ଥକ ରୋମାଣ୍ଟିକ୍ କବିତା, ଯାହା ସେ ତାଙ୍କ କବି ଜୀବନର ପ୍ରାଥମିକ ସ୍ତରରେ ରଚନା କରିଥିଲେ।

କବି ଲେଖିଛନ୍ତି:

ତୁମର ମଦ ପିଆଲାରେ ଯେଉଁ ମୁକ୍ତାଟି ଭସ୍ମ ହୋଇଗଲା
ତା'ର ଶୀତଳତା ନେଇ ଆଜି
ମୋର ସ୍ୱପ୍ନ ଧୀରେ ଧୀରେ ମିଳାଇ ଯାଏ
ନିଃସଙ୍ଗ ନୀରବତାରେ ଜୀବନ ମୋର ନୀଳନୀଳ
ସୈକତ ଶଯ୍ୟାରେ ଶୋଇ
ମୁଁ ଖୋଜେ ଦୁଇଟି ନୀଳ କସ୍ତୁରୀର ତାରା

('ଦୁଇଟି ନୀଳ କସ୍ତୁରୀର ତାରା' ନନ୍ଦାଦେବୀ')

କବିଙ୍କ ନନ୍ଦାଦେବୀ ସଙ୍କଳନରେ ସ୍ୱପ୍ନ ରଙ୍ଗର ପରିଶ୍ରାନ୍ତି ପ୍ରତୀକିତ ହୋଇଥିବା କେତୋଟି କବିତା ଅଛି। ଏହି *'ଦୁଇଟି ନୀଳ କସ୍ତୁରୀର ତାରା'* କବିତା ସହିତ *'ମହାସାଗରର ଗ୍ରାସ'* କବିତାଟି ଏହି ମୋହ ଭଙ୍ଗର ଅନୁଭବକୁ ପ୍ରତୀକିତ କରିଛି।

*'ଦୁଇଟି ନୀଳ କସ୍ତୁରୀର ତାରା'* କବିତାରେ ରୋମାଣ୍ଟିକ୍ ସ୍ୱପ୍ନଭଙ୍ଗର ଭାବ ଭାବନା ଅଧିକ ଚିତ୍ରିତ ହୋଇଛି ଯାହା ଅଧିକ ବିଷାଦର। କେଉଁ ଏକ ମୋହିନୀ କନ୍ୟାର 'ହରିଣୀ ନୟନ ପରି ଦୁଇଟି ନୀଳ କସ୍ତୁରୀର' ତାରାକୁ ଆପଣେଇ ନେବା ପାଇଁ ଯିଏ ଦିନେ ପ୍ରମତ୍ତ ହୋଇ ଲୁଣ୍ଠନ, ନାରୀଧର୍ଷଣର ବିଭୀଷିକା ସୃଷ୍ଟି କରିଥିଲା, ନାରୀର ଉପଭୋଗ ପାଇଁ ଯେ ସହସ୍ର କ୍ରୀତଦାସଙ୍କୁ ଖଂଜି ଦେଇଥିଲା ତା'ର ଆଜି ଦାରୁଣ ସ୍ୱପ୍ନଭଙ୍ଗ ଘଟିଛି। ମୋହଭଙ୍ଗ ହେଉଛି ସବୁଠାରୁ ଯନ୍ତ୍ରଣା ଦାୟକ।

ବାସ୍ତବତାର ଚିତ୍ର ପରିବେଷଣ ଭିତରେ କବି ବିଷାଦ ବା ରୋମାଣ୍ଟିକ ଏଗୋନିର ସୂଚନା ଦେଇଛନ୍ତି। ସେହି ନନ୍ଦାଦେବୀ ସଙ୍କଳନର ଅନ୍ୟତମ କବିତା ହେଉଛି *'ମୈୟାଁ'* ଯେଉଁଥିରେ ସ୍ୱପ୍ନଭଙ୍ଗର ବିଷାଦିତ କାରୁଣ୍ୟ ହିଁ ବର୍ଣ୍ଣିତ ହୋଇଛି। ଏଠି କବିଙ୍କପ୍ରଣୟ ବିଭୋର କଳ୍ପନା ବିଳାସ ଅବା ଛବିଳ ପ୍ରକୃତିର ବର୍ଣ୍ଣନା ପ୍ରାୟ ଦୁର୍ମିଳ। କବିତାଟିର ବିଷୟ ବସ୍ତୁ ନିମ୍ନୋକ୍ତ ପ୍ରକାରର। ଯେତେବେଳେ ପାମିର୍ ମାଳଭୂମିର ଖାଇବର ଗିରିପଥରେ ସନ୍ଧ୍ୟା ନଇଁ ଆସେ ଓ ତୁଷାର ଝଟିକା ମାଡ଼ିଆସେ ସେତେବେଳେ ମୈୟାଁ ଇରାକ୍‌ର କେଉଁ ଏକ ମରୁଝରରୁ ପାଣିକଳସୀ ଭର୍ତ୍ତି କରି ଫେରିଆସେ। ଆଉ ତା ପାଇଁ ଅଭିସାର ରଚନା କରିଥାଏ ପ୍ରେମୀ ଇରାକ୍ କିଶୋରଟିଏ।

କବିଙ୍କର 'ମୈୟାଁ କବିତାରୁ ଏଠାରେ କିଛି ଅଂଶ ଉଦ୍ଧାର କରାଯାଇ ପାରେ।

'ଆସମାନୀ କାଞ୍ଚୁଲୀ ଜାଫ୍ରାନୀ ଉଢ଼ନା
ତଳେ ଖେଳେ ସୁରମାର ଭ୍ରୁଲତା
ରଂଜିତ ଓଠତଳ ଲାଳିମାର ସ୍ୱପ୍ନେ
ଉନ୍ନତ ସ୍ତନେ କିବା ଫୁଟେ ଯୁଗ କବିତା
ରଖି ପଦ ମିଳନ ଓ ଛନ୍ଦ
ବୟସର ଗୁରୁଭାର ଯୁଗଜାନୁ ତଟରେ
ଯଉବନଭାରେ ମଠ ଗମନ
ଇରାକୀ ତରୁଣଥାଏ ପଥେ ତା'ର ଅନାଇ
ମାତାଲି ପିପାସା ଲେଖି ବକ୍ଷେ।

('ମୈୟାଁ, ନନ୍ଦାଦେବୀ)

ସେହି ନନ୍ଦାଦେବୀ ସଙ୍କଳନରେ ସେମିତି ଦୂର ଭୂଗୋଳକୁ ଅଙ୍କନ କରିଥିବା କବିଙ୍କର ଅନ୍ୟତମ ସଫଳ କବିତା ହେଉଛି *'ମାଲାବର ହିଲ'*। ଏହି କବିତାରେ ପ୍ରେମିକ ପୁରୁଷର ରିକ୍ତ ଜୀବନ ବର୍ଣ୍ଣିତ ହୋଇଛି। ନିଃସ୍ୱ ନିଃସମ୍ବଳ ହୋଇବି ପ୍ରେମିକ

ପୁରୁଷଟି ଏଠି ତଥାପି ସ୍ୱପ୍ନ ଦେଖୁଛି। ଦାରିଦ୍ର୍ୟ ତା'କୁ ତା ପ୍ରେମିକତାରୁ ତା'କୁ ଦୂରକୁ ଘୁଞ୍ଚାଇ ଦେଇ ପାରିନି।

ଗାଁର ଭୂଗୋଳ ପ୍ରତି କବିଙ୍କର ଆଜନ୍ମ ଆକର୍ଷଣ ଥିଲା। ଜହ୍ନରାତି ତାଙ୍କୁ ମତୁଆଲା କରିଥିଲା। ଗାଁର ଶାଗୁଆ ବଣ ତାଙ୍କୁ ଆତ୍ମହରା କରିଥିଲା। ମୁନ୍ଦରଗଡ଼ର ପ୍ରକୃତି ତାଙ୍କ କବିତାରେ ପ୍ରାଣବନ୍ତ ହୋଇଛି।

ତାଙ୍କ ଗ୍ରାମପଥ କବିତା ପରି ତାଙ୍କ *'ଛୋଟ ମୋର ଗାଁ'* ଯାହା ନନ୍ଦାଦେବୀରେ ସଙ୍କଳିତ ହୋଇଛି।

'ବିବର୍ଣ୍ଣ ମନେ ଯେବେ ସଂଜ ଘେରେ
ଭୟ ସବୁ ପକ୍ଷୀ ହୋଇ କୁଲାୟେ ଫେରେ
ବଲ୍ଲଭୀ ସମ ଆହା ଅମିତ ସ୍ନେହେ
ସରମୀ ଜୋଛନା ପଡ଼େ ଅଜାଡ଼ି ଦେଲେ
ରୂପସୀର ମେଖଳାକି ତନ୍ଦ୍ରାହତ
ହୋଇ ମୁକୁଳିଛି ଯଥା ଏ ଗାଁ ପଥ।'

('ଛୋଟ ମୋର ଗାଁ')

କବି ନନ୍ଦାଦେବୀରେ ପୃଥିବୀ ଆହୁରି ସବୁଜ ସୁନ୍ଦର ହେଉ ବୋଲି ପ୍ରାର୍ଥନା କରିଛନ୍ତି। ନନ୍ଦାଦେବୀ କବିଙ୍କର ଆଳୟ। ପୁଣି ସୃଷ୍ଟି ରଚନା ହେଉଛି ନନ୍ଦାଦେବୀର ପ୍ରସ୍ତାବନା। ସତ କବିଟିଏ ତ ସବୁ ବେଳେ ନିରତ ସୁନ୍ଦର ପୃଥିବୀର ସ୍ୱପ୍ନ ଦେଖେ। ପୃଥିବୀ ଆହୁରି ପ୍ରେମମୟ ଆହୁରି ସୁନ୍ଦର ହେଉ ବୋଲି କବି ବିନୋଦ ଚନ୍ଦ୍ର ନାୟକ ପ୍ରାର୍ଥନା କରିଛନ୍ତି।

*'ସାତ ତାରାର ଦୀପ'* କବିଙ୍କର ଏକ ରୂପକାତ୍ମକ କବିତା। 'ସାତ ତାରାର ଦୀପ'ରେ ଜଣେ ନାବିକ ମଝି ସମୁଦ୍ରରେ ତା ପୋତ ଭାଙ୍ଗିଗଲା ପରେ ପୋହଳା ଦ୍ୱୀପରେ ଆଶ୍ରୟ ନେଇଛି। ଜନଶୂନ୍ୟ ସେ ଦ୍ୱୀପରେ ରାତି ଆସିଛି। ଜଣେ କେହି ଆସି ସେଠି ସାତଟି ଦୀପ ଜାଳି ଦେଉଛି। ସେ ଦୀପ ଗୁଡ଼ିକ ହେଲା:—

୧. ଜ୍ୟୋତ୍ସ୍ନା ପିପାସା
୨. ଗ୍ରାମ୍ୟ ରୂପସୀ
୩. ପରିଣୀତା ବଧୂ
୪. ଗାଈଆଳର ବଂଶୀ
୫. ବୈଷ୍ଣବଗାନ ଓ ଏକତାରା
୬. ନାବିକ ଆଖିର ପ୍ରେମ ମୃତ୍ୟୁ ଓ ଗାନ
୭. ନାବିକ ଦେହର ଚନ୍ଦନ ଗନ୍ଧ।

ଏହି କବିତା ଯେପରି ପ୍ରତୀକ ଧର୍ମୀ ସେହିପରି ରହସ୍ୟବାଦୀ। ପ୍ଲାଟୋନିକ ପ୍ରେମର ଆଦର୍ଶ ଏହି କବିତାଟିରେ ପ୍ରତୀକିତ ହୋଇଛି। କବି ଆକାଶ ଭିତରେ ଏକ

ଚିରନ୍ତନ ଭୋଗବାଦୀ ପୁରୁଷ ସତ୍ତାକୁ ତର୍କଣା କରିଛନ୍ତିତ ପୃଥିବୀକୁ ଏକ କଲ୍ୟାଣମୟୀ ନାରୀସତ୍ତାର ପ୍ରତୀକ ଭାବେ ଗ୍ରହଣ କରିଛନ୍ତି।

ପ୍ରକୃତି ଓ ଚିରନ୍ତନ ଜୀବନ ଲୀଳାକୁ ସେ ନାନାଭାବରେ ଚିତ୍ରଣ କରିଛନ୍ତି। ସେ ସର୍ବତ୍ର ଦ୍ୟାବ୍ୟା ପୃଥିବୀର ମିଳନ ଛବିକୁ ହିଁ ଉଦ୍ଭାସିତ କରିଛନ୍ତି। ତାଙ୍କର *'ନୀଳପକ୍ଷୀ'* କବିତାଟି ମଧ ସେହି ଭାବଧାରାର କବିତା। ନୀଳପକ୍ଷୀରେ କବି ବିନୋଦ ଚନ୍ଦ୍ର ନାୟକ ଲେଖିଛନ୍ତି:—

ଦୂରେ ନଦୀ ତଟ ଥିଲା
ଆଉ ଥିଲା ରବି ଫସଲର କ୍ଷେତେ କ୍ଷେତେ
ହରିଦ୍ରା ଫୁଲର ବର୍ଣ୍ଣ ଛଟା
ଆଉ
ଶିଶିରର ଲଘୁଧାନ୍ୟେ
ସାଗରର ହରିତ୍ ଚଞ୍ଚଳତା
ସହଚରୀ କେଉଁ ନୀଳପକ୍ଷୀ
ତହିଁ ମତେ ଦେଇଥିଲା ଦେଖା
ମୋ ମନମୁକୁରେ ରଖି ତା'ର ତନୁଛାୟା
ନବୋଢ଼ାର ସମଥିଲା ନୟନେ ତା ଲଜ୍ୟାର କଜଳ
କଣ୍ଠେ ତା ମିଥୁନ ଗୀତି
ଚରଣେ ଚରଣେ
ଫୁଟିଥିଲା ପାଖୁଡ଼ା କି ସୁନେଲୀ ଫୁଲର।

''ମରାଳ'' ଏଠାରେ ଏକ ଚିରନ୍ତନ ପୁରୁଷ ସତ୍ତା ଯାହାର ପ୍ରଣୟ ବିଭୋର ଜୀବନ ଏଠାରେ ବର୍ଣ୍ଣିତ ହୋଇଛି। ନାରୀସତ୍ତା (Female Principle)ର ପ୍ରତୀକ ଏଠି ନୀଳପକ୍ଷୀ। ନାରୀ ପୁରୁଷର ଚିରନ୍ତନ ମନସ୍ତତ୍ତ୍ୱ ଏହି କବିତାରେ ସୂଚିତ।

କବି ବିନୋଦ ଚନ୍ଦ୍ର ନାୟକ ନାରୀ ପୁରୁଷର ଶାଶ୍ୱତ ମିଳନକୁ ହିଁ ମୁଖ୍ୟତଃ ତାଙ୍କ ରଚନାରେ ଅଭିଲିପିତ କରି ଯାଇଛନ୍ତି। ଜଣେ ଆର୍କିଟାଇପ ସମାଲୋଚକ ଯଥାର୍ଥରେ କହିଥିଲେ ଏ ଯାବତ୍ ଆମେ ମାତ୍ର ଗୋଟିଏ କଥାକୁ ହିଁ ଲେଖି ଚାଲିଛୁ, ତାହା ହେଉଛି ନାରୀ ପୁରୁଷର ସ୍ୱର୍ଗୀୟ ମିଳନ କଥା।

କବି ବିନୋଦ ଚନ୍ଦ୍ର ନାୟକ ଥିଲେ ସେ ଦୃଷ୍ଟିରୁ ଜଣେ ସଫଳ କବି ଯେ ଶାଶ୍ୱତକୁ ହିଁ ଚିତ୍ରଣ କରିଛନ୍ତି, ଚଳମାନ ସମସ୍ୟା ଅବା ସେପରି କୌଣସି ରାଜନୀତିକ ସ୍ଲୋଗାନକୁ ନୁହେଁ।

*'ନୀଳପକ୍ଷୀ'* କବିତାରେ ମରାଳର ଦୁଃଖ ଅପ୍ରମିତ। କାରଣ ତା'ର ପ୍ରାଣପ୍ରିୟା ସାଥୀ ନୀଳପକ୍ଷୀ ଅନ୍ୟ ପୁରୁଷରେ ପ୍ରଣୟମତ୍ତା। କେତେ ସରସ କବିଙ୍କ ବର୍ଣ୍ଣନା ଏଠି ପୁରୁଷର ବିକ୍ଷତ ମନସ୍ତତ୍ୱକୁ ଚିତ୍ରଣ କରିବାରେ।

## କବିଙ୍କ ମର୍ତ୍ତ୍ୟପ୍ରୀତି ଓ ମାନବ ସଂପର୍କ

କବି ବିନୋଦ ଚନ୍ଦ୍ର ନାୟକଙ୍କୁ ଓଡ଼ିଆ ସାହିତ୍ୟରେ କେବଳ ଜଣେ ପଳାୟନପନ୍ଥୀ ପ୍ରଣୟ ବିଭୋର ରୋମାଣ୍ଟିକ କବି ବୋଲି କହିବା ସତ୍ୟର ଅର୍ଦ୍ଧେକ ମାତ୍ର। ଆଉ ଅର୍ଦ୍ଧେକ ସତ୍ୟ ହେଉଛି ସେ ପୃଥିବୀକୁ ସମଭାବରେ ଭଲ ପାଉଥିବା ଜଣେ ବିଶିଷ୍ଟ ମାର୍ମିକବାଦୀ କବି ମଧ୍ୟ।

ମଣିଷର ସୁଖଦୁଃଖ ପ୍ରତି ସେ ଉଦାସ ନଥିଲେ। ଦୁଃଖ ପୀଡ଼ିତ ମଣିଷ ପ୍ରତି ସେ ବିମୁଖ ନଥିଲେ, ଯଦିଓ ଦୈନ୍ୟ ଦୁର୍ଭିକ୍ଷ, ରୋଗ ଶୋକ ବ୍ୟାପକ ଚିତ୍ର ତାଙ୍କ ସାହିତ୍ୟରେ ସେ ଆଙ୍କି ନାହାନ୍ତି।

ଅନ୍ନ ସଂସ୍ଥାପନ ପାଇଁ ଜଣେ ପ୍ରବାସୀ ହେଉବୋଲି ସେ ଚାହିଁ ନାହାନ୍ତି, ବରଂ ବଞ୍ଚିବା ପାଇଁ ପ୍ରବାସ କରିବାକୁ ସେ ବିଡ଼ମ୍ବନାର ବିଷୟ ବୋଲି ମନେ କରିଛନ୍ତି।

ମାଟିର ମୋହ ତାଙ୍କୁ ସବୁବେଳେ ଆଚ୍ଛନ୍ନ କରି ରଖିଛି। ଏହି ସମ୍ମୋହନର ଉଜ୍ଜ୍ୱଳ ଦୃଷ୍ଟାନ୍ତ ହେଉଛି କବି ବିନୋଦ ଚନ୍ଦ୍ର ନାୟକଙ୍କର *'ଗ୍ରାମପଥ'* କବିତା। ଓଡ଼ିଆ ସାହିତ୍ୟର ଏହା ଏକ ଅମୂଲ୍ୟ କଳାକୃତି। ଏହି *'ଗ୍ରାମପଥ'* କବିତା ପାଇଁ କବି ଅମର ହୋଇ ରହିବେ। ଏହି କବିତାଟି ସାମଗ୍ରିକ ଭାବେ ତାଙ୍କ ମର୍ତ୍ତ୍ୟପ୍ରୀତି ଆଉ ବୃହତ୍ତର ମାନବ ସଂପର୍କର ପ୍ରମାଣ ଦିଏ।

ଯେପରି ଇଂରାଜୀ ସାହିତ୍ୟର ମାସ୍ ଗ୍ରେ ଏବଂ ତାଙ୍କ 'ଏଲିଜି ରିଟେନ୍ ଇନ ଏ କଣ୍ଟ୍ରି ଚର୍ଚ୍ଚୟାର୍ଡ୍ ଏବଂ ଗୋଲଡ ସ୍ମିଥ ତାଙ୍କ 'ଦି ଡେଜାଟେ'ଡ ଭିଲେଜ' କବିତା ପାଇଁ ଜଗତ ବିଖ୍ୟାତ ହୋଇଛନ୍ତି, କେବଳ *'ଗ୍ରାମପଥ'* କବିତା ପାଇଁ ସେହପରି କବି ବିନୋଦ ଚନ୍ଦ୍ର ନାୟକ ଅତୁଳନୀୟ ଲୋକପ୍ରିୟତା ଲାଭ କରିଛନ୍ତି। ପାଠକ ଯେତେବେଳେ ତାଙ୍କ 'ଗ୍ରାମପଥ' କବିତା ପଢ଼େ ସେ ପ୍ରାଣରେ ତା ମଧୁର କୈଶୋରକୁ ହିଁ ଅନୁଭବ କରେ। କବିତାଟି ଉତ୍ତୀର୍ଣ୍ଣ ବୟସର ପ୍ରତ୍ୟେକଙ୍କୁ ସେମାନଙ୍କ ଅତୀତ ଜୀବନକୁ ଫେରାଇ ନିଏ। ସେହିପରି ବର୍ଷ ବର୍ଷ ଧରି ସହରରେ ଥିବା ଲୋକମାନଙ୍କ ସ୍ମୃତିରେ ଗ୍ରାମ୍ୟ ଜୀବନକୁ ଜୀବନ୍ତ କରିଦିଏ।

ଗାଁକୁ ପ୍ରଣାମ କରି କବି ପଲ୍ଲୀ ଜୀବନର ବାସ୍ତବତାକୁ ଉଦ୍ଭାସିତ କରି ଯାଇଛନ୍ତି। କବି ତାଙ୍କ *'ଗ୍ରାମପଥ'* କବିତାରେ ଲେଖିଛନ୍ତି:—

ବନ୍ଦନା ତୋତେ କରଇରେ ଗ୍ରାମ ପଥ

ବାଳକ ବେଳର ହେ ମୋ ପ୍ରିୟ ସାଥୀ
ଅଯୁତ ଦଣ୍ଡବତ
ତରୁଣ ଦିନର
କେଳିକୁଂଜ ତୋ
ତନୁ କର୍ପୂର ରେଣୁ
ତୋର ବେଣୁବନ ବିତାନେ ମୁଁ ଆଜି
କ୍ଳାନ୍ତି ଦିବସ ଯାପନରେ ଉପଗତ। ('ଗ୍ରାମପଥ')

କବିଙ୍କ 'ଗ୍ରାମପଥ' କବିତାଟି କବିଙ୍କର ଖାଲି ମାଷ୍ଟରପିସ୍ ନୁହେଁ ତା ସହିତ ସେ କବିତାଟି ଓଡ଼ିଶା ପ୍ରଦେଶର ବୃହତ୍ତର ଗ୍ରାମ୍ୟ ଜୀବନକୁ ଚିତ୍ରଣ କରିବାରେ ଅତୁଳନୀୟ।

ସେ ଦୂରସ୍ଥ ଭୂଗୋଳକୁ ଆଙ୍କୁ ଆଙ୍କୁ ଆପଣା ମାଟି ଓ ପରିବେଶକୁ ବେଶ ଅର୍ଥପୂର୍ଣ୍ଣ କରି ଚିତ୍ରଣ କରିଛନ୍ତି। କବିଙ୍କ ଶୈଶବ ପ୍ରତି ସମ୍ମୋହନ ଓ ମାନବୀୟ ସମ୍ବେଦନଶୀଳତା ଫିଟି ପଡ଼ିଛି କବିତାଟିରେ।

କବିଙ୍କର *'ବର୍ଷାର କବିତା'* ଠିକ୍ ତାଙ୍କ ପ୍ରସିଦ୍ଧ *'ଗ୍ରାମପଥ'* କବିତା ପରି, ଯେଉଁଠି ତାଙ୍କ ମାନବବାଦୀ ଦୃଷ୍ଟି ଭଙ୍ଗୀ ପ୍ରତିଫଳିତ:

'ସାରା ଗ୍ରାମ ଆଜି କର୍ମ ମୁଖର ଦେଖ
ପ୍ରାନ୍ତରେ ଚଳେ ଜୀବନ ରଚନା ଯେଣୁ
ଲାଜ ଭୟେ ଖାଲି ଭୀରୁ ପଳାତକ
ନିରଜନେ ଏକା ମୁହିଁ
ବିଫଳେ ବଜାଏ ମୋହରି ଅଳସ ବେଣୁ'।

('ବର୍ଷାର କବିତା', ନନ୍ଦାଦେବୀ)

ବିନୋଦ ନାୟକଙ୍କ କବିତାରେ ନାରୀପୁରୁଷ ମିଳନ ଚିତ୍ର ଅତ୍ୟନ୍ତ ବ୍ୟାପକ। ମାତ୍ର ତା'ରି ଭିତରେ ସେ ତାଙ୍କ ମାନବ ସଂପର୍କର ସମ୍ବେଦନଶୀଳତାକୁ ବ୍ୟକ୍ତ କରିଛନ୍ତି। ମଣିଷ ତା ଆତ୍ମାରେ ଉଲ୍ଲସିତ ହୋଇ ରହୁ। ଘୃଣା ଆଉ ଅପ୍ରେମ ଭିତରେ ମଣିଷ ତା'ର ଆତ୍ମାକୁ କଳୁଷିତ କରୁ ବୋଲି ସେ ଆଦୌ ଚାହିଁ ନାହାନ୍ତି।

ପ୍ରଣୟ ମୁଗ୍‌ଧ ଜୀବନ ହିଁ ଥିଲା ତାଙ୍କ କବିତାର ସବୁଠାରୁ ବଡ଼ ଓ ବର୍ଣ୍ଣାଢ୍ୟ ଚିତ୍ର। ଜୀବନର କଳାପକ୍ଷ ହିଁ ଜୀବନକୁ ସାର୍ଥକତା ଆଣିଦଏ। ସେ ତେଣୁ କଳାପକ୍ଷକୁ ବାଦନେଇ ମଣିଷ ଜୀବନକୁ ଗ୍ରହଣ କରି ନାହାନ୍ତି।

ସେ ବିକ୍ଷତ ଜୀବନର ଗୀତ ଗାଇ ନାହାନ୍ତି, ବରଂ ଆନନ୍ଦମୟ ସଫଳ ଜୀବନର ସ୍ୱପ୍ନ ଦେଖୁଛନ୍ତି ଓ ତାଙ୍କ କବିତାରେ ତାକୁ ଉଭାସିତ କରିଛନ୍ତି।

ପ୍ରେମ, ଜୀବନ, ସବୁଠି ସେ ମାର୍ମିକ ସଂପର୍କକୁ ଦେଖୁଛନ୍ତି ଆଉ ତାକୁ ଲେଖୁଛନ୍ତି।

ସଙ୍ଗମ ଲାଳସୀ ପ୍ରେମୀଯୁଗଳ ପୃଥିବୀକୁ ଯେମିତି ଶସ୍ୟ ଶ୍ୟାମଳା କରିଛନ୍ତି ସେମିତି ନବ ଜୀବନର ସଞ୍ଚାର କରିଛନ୍ତି। ପୃଥିବୀର ସେହି ସୃଷ୍ଟି ଧର୍ମକୁ କବି ସ୍ୱୀକାର କରିଛନ୍ତି—

ସହସା ଦେଖିଲି ଅଗ୍ରେ ପୃଥିବୀର ଛାୟା
ସ୍ନିଗ୍ଧ ନୀରବେଣୀ ମୁଗ୍ଧ ପ୍ରାନ୍ତରର ମାୟା
ଓଷ୍ଠେ ଓଷ୍ଠ ସ୍ପର୍ଶ ଚଳେ ବାହୁ ଆଲିଙ୍ଗନ
କେତେ ନୀବୀ ବନ୍ଧର ମୋକ୍ଷଣ
ଗୁଣ୍ଠନ ତଳର କେତେ ଅଶ୍ରୁଅଭିମାନ
ତନସ୍ତ ବିଳାସ ପୁଣି ଆଲୋକର ସ୍ନାନ
ଦେଖିଲି ମୁଁ ମିଥୁନର ଛବି
ଗୁଚ୍ଛ ଗୁଚ୍ଛ ଶସ୍ୟ ଆଉ ଶଙ୍ଖ ସ୍ୱେତ ଅନେକ ମାନବୀ
ସ୍ୱେଦ ଦେଇ ରକ୍ତ ଦେଇ ଗୃହେ ତାରେ ଆଣଇ ମାନବ,
ନୂତନ ପ୍ରାଣର କଳରବ
ତା'ର ମଧ ଦେଇ ରଚେ
ବିଷମଧେ ଅନ୍ୱେଷି ପୀୟୁଷ
ଆଣଇ ସେ ଆତ୍ମାର ସନ୍ତୋଷ।

କବି ବିନୋଦ ଚନ୍ଦ୍ର ନାୟକ ପୃଥିବୀକୁ 'ଅମରାବତୀ' ବୋଲି ଜ୍ଞାନ କରିଛନ୍ତି। ପ୍ରେମ ପ୍ରଣୟର ବିପୁଳ ଚିତ୍ର ଅଙ୍କନ କରି ମାନବାତ୍ମାର ମହନୀୟତାକୁ ପ୍ରତିପାଦନ କରିଛନ୍ତି। ଧୂସର ପୃଥିବୀ ନୁହେଁ, ଉଜୁଡ଼ା କ୍ଷେତ ନୁହେଁ ଶସ୍ୟଶ୍ୟାମଳା ଶସ୍ୟ କ୍ଷେତ୍ରର ସେ ଚିତ୍ର ଆଙ୍କିଛନ୍ତି।

ଶସ୍ୟ ସହିତ ମନୁଷ୍ୟର ଜୀବନ ବଞ୍ଚିବା ଆଉ ତା'ର ସ୍ୱପ୍ନକୁ ଆପେକ୍ଷିକ ଭାବେ ଦେଖିଛନ୍ତି। ପୃଥିବୀକୁ ସେ ନାନାମତେ ଦେଖିଛନ୍ତି। କେତେବେଳେ ପୃଥିବୀ ସହନଶୀଳତାର ଅହଲ୍ୟାତ ଆଉ କେତେବେଳେ ସୃଜନଶୀଳତାର ଦୀପିତା ପୃଥିବୀ, କେତେବେଳେ ଆଦିମ ଓ ଇତର ମିଳନ ତୀର୍ଥତ ପୁଣି କେତେବେଳେ ଲକ୍ଷ ଲକ୍ଷ ଅଶରୀରୀ ଆତ୍ମାର ବିଳାପ କ୍ଷେତ୍ର।

ନାନା ମତେ ପୃଥିବୀକୁ ତାଙ୍କୁ ନିବିଡ଼ ଲାଗିଛି। କବି ଲେଖିଛନ୍ତି ମଣିଷର ପ୍ରତିଟି ସ୍ୱପ୍ନ ବା ଅଭିଳାଷ ହେଉଛି ଗୋଟେ ଗୋଟେ 'ମାନବିକ କାବ୍ୟ'। ମଣିଷ ଜୀବନର ସ୍ପର୍ଶ ନଥିଲେ ତାହା ସତେ ଯେପରି ସେତିକି ଅର୍ଥପୂର୍ଣ୍ଣ ନୁହେଁ। ମଣିଷର ଉପସ୍ଥିତି ହିଁ ଏ ପୃଥିବୀକୁ ଅର୍ଥପୂର୍ଣ୍ଣ କରିଛି। ନାରୀ, ନାବିକର ପ୍ରଣୟମତ୍ତ ମନ, ମନୁଷ୍ୟର ହୃଦୟ ଆଉ ତା ମନ ଓ ହୃଦୟର ସମସ୍ତ ଭଣିତା ହେଉଛି ରମଣୀୟ ମାନବିକ କାବ୍ୟ।

କବି ବିନୋଦ ଚନ୍ଦ୍ର ନାୟକ ଲେଖିଛନ୍ତି:—

ସେ ସମସ୍ତ ରଜନୀଗନ୍ଧା ନାରୀର ହୃଦୟ

ସ୍ଫଟିକର ସମ ସ୍ୱଚ୍ଛ, ସେ ସମସ୍ତ ନାବିକର ମନ
କରୁଣ ଡେଣାରେ ସନ୍ଧ୍ୟାଗାମୀ ହଂସସମ ନିବିଡ଼।
ସେ ହୃଦୟ ସେ ମନର ଯେ ସମସ୍ତ ଭଣିତା
ସେ ସମସ୍ତ ଏକ ମାନବିକ କାବ୍ୟ।

('କୋଚିନ ବନ୍ଦର', ସାତ ତାରାର ଦୀପ)

ପୃଥିବୀର ରମଣୀୟତାକୁ ମଣିଷ ହିଁ ଉପଲବ୍ଧି କରିଛି। ସେ ପୃଥିବୀର ବ୍ୟାଖ୍ୟା କରିଛି, ପ୍ରକୃତିକୁ ଚିତ୍ରଣ କରିଛି। ମଣିଷ ବ୍ୟତିରେକେ ଏ ପ୍ରକୃତି ଯେମିତି ଅନୁର୍ବର। ଜଣେ ସଚ୍ଚା ରୋମାଣ୍ଟିକ କବିର ମନ ଦେଇ ସେ ଏ ମର୍ତ୍ତ୍ୟ ଆଉ ମଣିଷର ମହନୀୟତାକୁ ପ୍ରତିପାଦନ କରିଛନ୍ତି।

ସେ ପୁଣି କମ୍ ପ୍ରତୀକବାଦୀ କବି ନୁହଁନ୍ତି। ତାଙ୍କ କବିତାର ଶିଳ୍ପାୟନରେ ରୂପକାତ୍ମକତା ଏକ ବିଶିଷ୍ଟ ଦିଗ। ସେ ସ୍ୱର୍ଗ ମର୍ତ୍ତ୍ୟ, ଶୁଆ ଶାରି ରୂପକରେ ନିତ୍ୟକାଳର ନାରୀପୁରୁଷ ପ୍ରାଣକୁ ବର୍ଣ୍ଣନା କରିଛନ୍ତି। ଏପରି ରୂପକାତ୍ମକ (Allegory) ହୁଏତ ତାଙ୍କ ସମସାମୟିକ ଓଡ଼ିଆ କବିଙ୍କ କବିତାରେ ପରିଲକ୍ଷିତ ହୁଏନା !

ସୁଦୀର୍ଘ ଓଡ଼ିଆ କବିତା ଧାରାରେ ବିନୋଦ ଚନ୍ଦ୍ର ନାୟକ କେବଳ ଜଣେ ସୁପ୍ରତିଷ୍ଠିତ ରୋମାଣ୍ଟିକ୍ କବି ନୁହଁନ୍ତି, ତାସହିତ ସେ ଜଣେ ଅତିବାସ୍ତବବାଦୀ (Surrealistic) କବି। ଏହି ଅତିବାସ୍ତବବାଦୀ କବିତାର ଭାବଚେତନା ପ୍ରତି ସେ ଅତ୍ୟନ୍ତ ଆଗ୍ରହୀ।

ଆତ୍ମାର ମୁକ୍ତି ପାଇଁ ତାଙ୍କର ବ୍ୟାକୁଳତା ଅସୀମ। କିଛିଟା ଅଧିକ ରହସ୍ୟବାଦୀ ହେବା ସହିତ ସେ ତାଙ୍କ ସ୍ୱପ୍ନ ଓ କଳ୍ପନାରେ ସଂଶୟାଚ୍ଛନ୍ନ।

ୟୁରୋପର ଅତି ବାସ୍ତବ ବାଦୀ କାବ୍ୟ ଆନ୍ଦୋଳନ ସହିତ ବିନୋଦ ଚନ୍ଦ୍ର ନାୟକ ପରିଚିତ ଥିଲେ। କାହିଁକି କେଜାଣି ସେ ନିଜକୁ ଅତିବାସ୍ତବବାଦୀ କବି ଭାବେ ପରିଚିତ କରିବା ପାଇଁ ଅଧିକ ଆଗ୍ରହୀ।

ଓଡ଼ିଶାର ସୁନ୍ଦରଗଡ଼ ଜିଲ୍ଲାର ଦୂର ପ୍ରାନ୍ତୀୟ ପଲ୍ଲୀରେ ସେ ଆବସ୍ଥାନ କରୁଥିଲେହେଁ ତାଙ୍କ କାବ୍ୟ ଚେତନାରେ ସେ ଅଧିକ ବିଶ୍ୱମୁଖୀ। ନିଜ ଭାଷାର କବିମାନଙ୍କ ସହିତ ଅନ୍ୟ ଭାଷାର କବି ମାନଙ୍କ ପ୍ରତିମଧ ଆଗ୍ରହୀ।

ସେ ପାଉଣ୍ଡ୍ ଓ ଇଲିୟଟ୍‌ଙ୍କ ପରି ଦୂର ପୃଥିବୀର ଚିତ୍ରକର। ବିନୋଦ ଚନ୍ଦ୍ର ନାୟକଙ୍କ ଦୂର ଭୂଗୋଳକୁ ଚିତ୍ରଣ କରିବାର ପାରଦର୍ଶିତା ସବୁଠାରୁ ଅଧିକ। ବରଂ ଏହା ତାଙ୍କର ଅନ୍ୟ ତମ ବୈଶିଷ୍ଟ୍ୟ। ଏତେ ମାତ୍ରାରେ ତାହା ତାଙ୍କ ସମସାମୟିକ ଅନ୍ୟ ସ୍ୱୈରବାଦୀ ଓଡ଼ିଆ କବି ମା[illegible] ମାନ୍‌ସିଂହ, ରାଧାମୋହନ ଗଡ଼ନାୟକ ବା କୃଷ୍ଣଚନ୍ଦ୍ର

ତ୍ରିପାଠୀଙ୍କ କବିତାରେ ପରିଲକ୍ଷିତ ହୁଏନି।

କବି ବିନୋଦ ଚନ୍ଦ୍ର ନାୟକ ବାସ୍ତବତାର ଚିତ୍ରଣ କରିଛନ୍ତି ସତ, ହେଲେ ତା'ର ସଂସ୍ଥାପନ ଅତିବାସ୍ତବ ବାଦୀ କବିତାର ଗୁଣ ଓ ଲକ୍ଷଣ କେତେକାଂଶରେ ଗ୍ରହଣ କରିଛି।

ଏହି ଅତିବାସ୍ତବବାଦୀ କବିତାର ସ୍ୱରୂପ ତାଙ୍କ 'ଉଲ୍ଲଙ୍ଘରୁଦ୍ର' କବିତା ସଙ୍କଳନରେ ସୂଚିତ ହୋଇଛି:—

''ମନସ୍ତାତ୍ତ୍ୱିକ କାର୍ଲଗୁସ୍ତାଭ୍, ୟୁଙ୍ଗ ସମଗ୍ର ସାହିତ୍ୟ ତଥା କଳା ସର୍ଜନାକୁ ଆବ୍‌ଷ୍ଟ୍ରାକସନ-ଭାରସାମ୍ୟ ବିହୀନ ଅସ୍ଥିରତା-ହାଇପର୍‌ଟେନସନର ଅଭିଯାତ ବୋଲି ବିଜ୍ଞାପିତ କରିଛନ୍ତି। ବଂଶପରଂପରା କ୍ରମରେ ପୁଂଜିଭୂତ ନିର୍ଜ୍ଞାନ ଏହି ସଂଜ୍ଞାର ପ୍ରତିଭୂ ଏବଂ ସମସ୍ତ କବି ସାହିତ୍ୟକାର କଳାକାର ଏକ ପ୍ରକାର ମାନସିକ ଆତ୍ମ ନିର୍ବାସନରେ ବିବ୍ରତ।

କବିତା କବି ପାଇଁ ଏକ ଅଟୋଥେରାପି-ଆତ୍ମ ନିରାମୟତାର ଏକ ପିତୁଳା-ମାନବୀ-ମାନେକିନ୍-ଦ ଲେଡି ଉଇଥ୍ ଦି ଲ୍ୟାମ୍ପ: ରକ୍ତାକ୍ତ ରଣାଙ୍ଗନାରେ ମୃତ୍ୟୁନ୍ମୁଖ ସୈନିକ ସମ୍ମୁଖରେ ଦୀପାନ୍ୱିତା ଫ୍ଲୋରେନସ ନାଇଟିଙ୍ଗେଲ।

'ଉଲ୍ଲଙ୍ଘରୁଦ୍ର' କବିତା ଗ୍ରନ୍ଥରେ ସନ୍ନିବେଶିତ କବିତା ପୂର୍ବରୁ ଶୀର୍ଷକରେ କବି ବିନୋଦ ଚନ୍ଦ୍ର ନାୟକ ଏହି ସୂଚନା ଦେଇଛନ୍ତି ତାଙ୍କ ଶେଷ ଜୀବନର କବିତା ସଂପର୍କରେ ତାଙ୍କ କବିତାର ଅଭିଧା ଏହାକୁ ଇଙ୍ଗିତ କରେ ବୋଲି ସେ ସୂଚନା ଦେଇଛନ୍ତି।

## କବିଙ୍କ ସୌନ୍ଦର୍ଯ୍ୟାନୁଭବ ଓ କାବ୍ୟ ଚେତନା

କବିଥିଲେ ସୌନ୍ଦର୍ଯ୍ୟର ପୂଜାରୀ। ନାରୀ ଥିଲା ତାଙ୍କ ପ୍ରେମର ମୂଳ। ତାଙ୍କ ଦୃଷ୍ଟିରେ ନାରୀ ଏକ ସୌନ୍ଦର୍ଯ୍ୟ ବସ୍ତୁ ତାହା ସହିତ ପ୍ରେମର ବସ୍ତୁ (Loving object) ମଧ୍ୟ। ତାଙ୍କ ଭାବ ଭାବନାରେ ନାରୀ ସତରେ ଅତୁଳନୀୟ । ତାଙ୍କ ସମଗ୍ର କଳ୍ପନାରେ ନାରୀ ଯେମିତି, ମୂଳ ଓ ପରମ । ନାରୀର ଦେହ ମନକୁ ଚିତ୍ରଣ କରି କବି ତାଙ୍କ କବିତାରେ ନୂତନ ରୂପବିଭବର ପ୍ରତିଷ୍ଠା କରିଛନ୍ତି। ଯୌନାବେଗ ଗୋଟିଏ ଗଭୀରତର ଚିତ୍ତ ପୁଲକ ଭିତରେ ସମାହିତ ହୋଇଛି। ସୁଫି ଓ ଟ୍ରୋବାଡୋର କବିଙ୍କ ଭଳି କବି ବିନୋଦ ନାୟକ ନାରୀ ପ୍ରେମକୁ ମହାର୍ଘମନେ କରିଛନ୍ତି। ତାଙ୍କର ନିବିଡ଼ ସୌନ୍ଦର୍ଯ୍ୟାନୁଭୂତି ନାରୀକୌନ୍ଦ୍ରିକ ତାଙ୍କ ସାତ ତାରାର ଦୀପ ନୀଳଚନ୍ଦ୍ରର ଉପତ୍ୟକା ଓ ଇଳାବୃତ୍ତ କବିଙ୍କ ସେହି ନାରୀ ଚେତନାର ଅନନ୍ୟ ରୂପଲିପି।

କବିଙ୍କ କବିତାର ବିଷୟବିନ୍ୟାସ, କାହାଣୀଧର୍ମିତା, ଚରିତ୍ରଚିତ୍ରଣ-ସବୁଥିରେ ତାଙ୍କ ସୌନ୍ଦର୍ଯ୍ୟାନୁଭୂତି ଓ ରୋମାଣ୍ଟିକ ବିଳସିତା ପରିଲକ୍ଷିତ। ତାଙ୍କ କବିତାରେ ପ୍ରତୀକିତ ରୂପକଥା, ପୁରାଣକଳ୍ପ, ଆଦିମଧ୍ୟ ସେହି ନାରୀ ଚେତନାକୁ ନେଇ ଗଢ଼ି ଉଠିଛି। ତାଙ୍କର ପ୍ରତିଟି କଳ୍ପନାରେ ସେ ପ୍ରାୟ ନାରୀ ଭାବନାର ଭାଷା ଲେଖିଛନ୍ତି।

ଯେହେତୁ ତାଙ୍କର ଉଲ୍ଲିଖିତ ସୌନ୍ଦର୍ଯ୍ୟାନୁଭୂତି ଓ କଳ୍ପନାବିଳାସ ନିହାତି ଭୂମି ସଂଲଗ୍ନ ବା ପାର୍ଥିବ ନୁହେଁ, ସେହେତୁ ତାହା ପାଠକର ରସ ଚେତନାକୁ ଆମୋଦିତ କରେ। ତାଙ୍କ କଳ୍ପନାବିଳାସର ସବୁଠାରୁ ମନୋଜ୍ଞ ପ୍ରସ୍ଥହେଲା ନାରୀଚେତନା। ଅନନ୍ତ ଆକାଶ ଚନ୍ଦ୍ର, ସୂର୍ଯ୍ୟ, ତାରା, ଶ୍ୟାମଳ ପୃଥିବୀ ସେ ପୃଥିବୀର ବର୍ଷା, ବିଦ୍ୟୁତ୍, ଜ୍ୟୋସ୍ନା, ତମିସ୍ରାର ବର୍ଣ୍ଣନା ସହିତ କବି ନାରୀ ବିଷୟକ ବର୍ଣ୍ଣନା ଦେବାକୁ କେବେ ବିସ୍ମରି ଯାଇ ନାହାନ୍ତି। ବିଷୟ ନିର୍ବାଚନରେ କବିଙ୍କ ରୋମାଣ୍ଟିକ ମାନସିକତା ଅତ୍ୟନ୍ତ ପ୍ରତ୍ୟକ୍ଷ ହୋଇଛି। କବି-କଳ୍ପନା, ସ୍ୱପ୍ନମୟତା, ସୌନ୍ଦର୍ଯ୍ୟାନୁଭୂତି ମଧ୍ୟରେ ସେ ଯେତେ ପଲ୍ଲୀପ୍ରାଣ, ତତୋଧିକ ଶୃଙ୍ଗାରିକ। ସେହି ଶୃଙ୍ଗାରିକତା ହିଁ ତାଙ୍କୁ ପୃଥିବୀର ଜୀବନ୍ତ ସୌନ୍ଦର୍ଯ୍ୟପ୍ରତି ଅଧିକ ଆକର୍ଷିତ କରିଛି। ନାରୀ କବିଙ୍କ ପାଇଁ ସାଧନାର ପାତ୍ରୀ, ସ୍ୱପ୍ନ ଓ କଳ୍ପନାର ପରିପୁଷ୍ଟି ନିମନ୍ତେ ସେ ନାରୀକୁ ମାଧ୍ୟମ କରିଛନ୍ତି।

ସେ ଓଡ଼ିଆ କାବ୍ୟ ଧାରାରେ କେବଳ ଜଣେ ସୁପ୍ରତିଷ୍ଠିତ ସ୍ୱୈରବାଦୀ କବି ନୁହଁନ୍ତି, ଜଣେ ସମର୍ଥ ପ୍ରେମିକ କବି ବି। ଛଟା ବା ଶୈଳୀରେ, ପ୍ରାଣ ଓ ଶିହରଣରେ

ସେ 'ପାରସିକ' ମନେ ହୁଅନ୍ତି— ଜୀବନକୁ ଓମର୍ ଖାୟାମ୍‌ଙ୍କ ପରି ସେ ଯେପରି ପ୍ରଣୟ ମୁଖୀ କରି ଦେଇଛନ୍ତି। କବି ବିନୋଦନାୟକଙ୍କ କାବ୍ୟ ଭାବନାରେ ଏହି ପ୍ରଣୟ ବିଳାସ ଓ ଶୃଙ୍ଗାର ରସିକତା ଏକାନ୍ତ ଉଲ୍ଲେଖଯୋଗ୍ୟ।

ତାଙ୍କ ପ୍ରସିଦ୍ଧ କବିତା ଗ୍ରନ୍ଥ *ଇନ୍ଦ୍ରାବୃତ୍ତ*ରେ ସ୍ଥାନିତ 'ଜମିନ ଆସମାନ' କବିତାଟିକୁ କବିଙ୍କର ଏହି ପ୍ରଣୟ ଚେତନା ଦୃଷ୍ଟିରୁ ଏଠାରେ ଉଲ୍ଲେଖ କରାଯାଇ ପାରେ। ସେ ଲେଖିଛନ୍ତି—

ନୁହେଁ ଏ ଜୀବନ ବିରାଟ ଭୂମିକା ନୁହେଁ
  ପ୍ରଭାତୀ ସଳିତା ଏପରା ତୁଳସୀ ମୂଳେ
ପାନ୍ଥ ଶାଳାରେ ପଥିକ କି ଆମେ ଦୁହେଁ
  ନାବିକ କି ଆମେ ଦୂରବାହୀ ନଦୀକୂଳେ।
ରୂପ ମଞ୍ଚର ରାଜନଟ ରାଜନଟୀ
  ରଚନା କରିବା ବିଳାସର ଅଭିନୟ
ଜହ୍ନୀଲତାର କୁସୁମ ବିଭବ ସମ
  ଗାଇବା କ୍ଷଣିକ ଜୀବନର ଜୟ ଜୟ
ଭୁଲିଯାରେ ସଖି ଛୋଟ ଶତ ଅପମାନ
  ଛୋଟ ବ୍ୟର୍ଥତା ମର୍ମ ଘାତକ ବାଣୀ
ତଳରେ ଜମିନ ଉପରେ ଏ ଆସମାନ୍
  ଗାଅ, ଏଜୀବନ ଖୋଦାର ମେହରବାନି।

ପ୍ରେମିକତା ହିଁ ଜୀବନରେ ସାଧୁତା ଭରିଦିଏ। ଜଣେ ସତ ପ୍ରେମିକ କେବେ କାହାସହିତ କୁଟିଳ ଆଚରଣ କରିପାରେ ନାହିଁ, କାହାପ୍ରତି ଆଦୌ ନିର୍ଦ୍ଦୟ ହୋଇପାରେ ନାହିଁ।

ଏ ଜୀବନ କ୍ଷଣିକ। ଜୀବନ ରୋଗର ମୂଳ ହେଉଛି ପ୍ରୀତି ଆଉ ମୈତ୍ରୀ। ବିଯୋଗିତ ହେବାରେ ଜୀବନ ନାହିଁ।

କବି ବିନୋଦ ଚନ୍ଦ୍ର ନାୟକ ପ୍ରେମ-ପ୍ରଣୟର ଜୟଗାନ କରିଛନ୍ତି। ତା'କୁ ସ୍ୱର୍ଗୀୟ ମନେ କରିଛନ୍ତି। ଆକାଶ ପୃଥିବୀ ମଧରେ ମଣିଷର ଏ ଜୀବନ ଘୃଣାରେ ଘୁଞ୍ଚିଯିବା ପାଇଁ ଉଦ୍ଦିଷ୍ଟ ନୁହେଁ। ପ୍ରେମରେ ସଂଯୋଜିତ ହେବାର ବାସନା ଜାଗେ। ତାହା ହିଁ ଜୀବନର ସାର୍ଥକତା।

ସମୁଦ୍ର, ନୀଳ ପାହାଡ଼, ଶସ୍ୟକ୍ଷେତ୍ର, ସବୁଜ ଉପତ୍ୟକା, ଦୂରନଭ, ଦୂରସ୍ଥ ନଦୀ, ରହସ୍ୟମୟ ଲାଗୁଥିବା ଉପକୂଳ, ଜ୍ୟୋତ୍ସ୍ନା, ନାମହୀନ ଫୁଲର ଗନ୍ଧ ଆଉ ନାରୀପ୍ରେମର ଯେତେ ଚିତ୍ତ ଉଲ୍ଲାସକ ସବୁ କବିଙ୍କର ଅତିପ୍ରିୟ।

ତାଙ୍କ କବିର ଚିତ୍ତ ସତତ ଯେପରି ଏହାରି ଭିତରେ ବିଚରଣ କରିଛି। ସେହି 'ଇଳାବୃତ୍ତ'ରେ ଏ ଉଚ୍ଚାରଣ—

ସାଗରର ନୀଳ ସ୍ବରାଛାୟା
କିନାରେ ଦ୍ୱୀପ ଅରଣ୍ୟେ, ଏ ମାଳଞ୍ଚ ମାୟା
ଟାଣିନିଏ ଦୂରେ
ସ୍ୱର୍ଣ୍ଣମୃଗ ସନ୍ଧାନରେ ରହସ୍ୟର ପୁରେ
ମାରି ଦୁଇହାତ
ଖୋଲେଁ ଯେବେ ରହସ୍ୟକପାଟ
ଚକିତେ ଚମକିଦେଖେଁ ହାତେ ନେଇ ସୁନାର ପ୍ରଦୀପ
ତୁମେଇ ରହିଛ ଛିଡ଼ା ଅଙ୍ଗର, ଆଲୋକେ
ସୁନାକରି ଏ ନିର୍ଜ୍ଜନ ଦୀପ।

('କେଉଁଠି ସୁନାର ଦୀପ')

ପ୍ରଣୟାନୁଭୂତିକୁ ଛନ୍ଦୋବଦ୍ଧ ଅଭିବ୍ୟକ୍ତି ଦେବାପାଇଁ କବିଙ୍କର ସାମର୍ଥ୍ୟ ଏକାନ୍ତ ଅତୁଳନୀୟ। ପ୍ରେମର କୋମଳ ଅନୁଭୂତିକୁ ବ୍ୟକ୍ତ କରିବା ପାଇଁ କବି ଅନୁରୂପ ଛନ୍ଦ ବ୍ୟବହାର କରିଛନ୍ତି।

ମାର୍ମିକମ୍ବାର ଭାବ ସୌନ୍ଦର୍ଯ୍ୟ ପ୍ରତି କବି ଯେପରି ଆକୃଷ୍ଟ ହୋଇଛନ୍ତି ସେହିପରି ସେ ଭାବ ସୌନ୍ଦର୍ଯ୍ୟର ପ୍ରଦର୍ଶନ ପାଇଁ ଆପଣାକୁ ସେହି ଭାବରେ ନିମଜ୍ଜିତ କରି ରଖିଛନ୍ତି।

ଆନନ୍ଦବୋଧ ସହିତ ସେ ପ୍ରାଣର ବ୍ୟାକୁଳତା ମିଶାଇ ବେଦନାବୋଧକୁ ତାଙ୍କ କବି ଚିତ୍ତର ଏକ ଅଂଶ କରିଛନ୍ତି। ବିରହର ବେଦନା ଥିବାରୁ ତାଙ୍କ ପ୍ରେମ କବିତା ଗୁଡ଼ିକ ପାଠକର ଅନ୍ତରକୁ ସ୍ପର୍ଶକରିଛି।

ବିମୁଗ୍ଧ ପ୍ରେମାନୁଭୂତିକୁ କବିତାୟିତ କରିବା କ୍ଷେତ୍ରରେ କବି ବିନୋଦ ଚନ୍ଦ୍ର ନାୟକ ତାଙ୍କ ସମସାମୟିକ ବିଶିଷ୍ଟ ରୋମାଣ୍ଟିକ କବି ମାୟାଧର ମାନସିଂହଙ୍କ ସହିତ କେବଳ ତୁଳନୀୟ।

ମାନସିଂହଙ୍କ କବିତାରେ ପ୍ରକୃତି ଈଶ୍ୱର ଓ ନାରୀ ଯେପରି ଏକୀଭୂତ ହୋଇ ଯାଇଛନ୍ତି କବି ବିନୋଦଚନ୍ଦ୍ର ନାୟକଙ୍କ କବିତାରେ ସେହିପରି ନାରୀ, କଳ୍ପନା ଓ ଭୂଗୋଳ ସମନ୍ୱିତ ହୋଇଛି। ଦୂର ନିର୍ଜ୍ଜନ ପୃଥିବୀର ଭୂଗୋଳକୁ ଲେଖିଲାବେଳେ ଆପଣାର ଗଭୀର ପ୍ରେମାନୁଭୂତିକୁ କବି ମିଶାଇ ଦେଇଛନ୍ତି। ଓଡ଼ିଆ ସାହିତ୍ୟ ଇତିହାସରେ ଏହା ଏକ ଅନନ୍ୟ କାବ୍ୟଚେତନା।

ଦୂରତମ ଭୂଗୋଳକୁ ଚିତ୍ରଣ କରିବା ବାସନାରେ ସେ ମହାନଦୀକୁ ଛାଡ଼ି

ନୀଳନଦୀକୁ ଚିତ୍ରଣ କରିଛନ୍ତି। ନିକଟକୁ ନଲେଖି ଦୂର ପୃଥିବୀକୁ ଲେଖିଯିବାରୁ କବି ଯେପରି ସାର୍ବଜନୀନତାକୁ ଇଙ୍ଗିତ କରିଛନ୍ତି ସେହିପରି ଶାଶ୍ୱତକୁ ପ୍ରତୀକିତ କରିଛନ୍ତି।

ବିନୋଦ ଚନ୍ଦ୍ର ନାୟକଙ୍କ ସରୀସୃପର କାବ୍ୟ ସ୍ୱର ତାଙ୍କର ଇଳାବୃତ୍ତର, ସାତ ତାରାର ଦୀପ ଅବା ନୀଳଚନ୍ଦ୍ରର ଉପତ୍ୟକାରେ ପ୍ରତୀକିତ ପ୍ରାକ୍ତନ କାବ୍ୟ ସ୍ୱରଠାରୁ ଅଲଗା ପ୍ରକାରର। ଦୂର କଳ୍ପନାରୁ ଓହରି ଆସି କବି ଦେହବାଦୀ ବାସ୍ତବତା ଭିତରେ ଆପଣା କବି ଚିତ୍ତକୁ ବନ୍ଦୀ କରି ରଖିଛନ୍ତି।

କବିଙ୍କର ଏହି ସରୀସୃପ କବିତା ଗ୍ରନ୍ଥଟି ମର୍ଯ୍ୟାଦାଜନକ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛନ୍ତି। ଏହି କବିତା ଗ୍ରନ୍ଥର କବିତା ଗୁଡ଼ିକ ଯେପରି ବାସ୍ତବ ବାଦୀ ଓ ପ୍ରକୃତିବାଦୀ ସେହିପରି ଅତିବାସ୍ତବବାଦୀ ମଧ୍ୟ। ସେହିକବିତାମାନଙ୍କରେ ମହାକାଳ, ମହାବିବର୍ତ୍ତନ ପ୍ରତୀକିତ ହୋଇଛି, ଆମର ଆଦିମତାକୁ ସୂଚିତ କରା ଯାଇଛି। କାଳ କାଳ ଧରି ନାରୀ ଓ ତା'ର ଯୌବନ ପୁରୁଷର ସରୀସୃପୀୟ କ୍ଷୁଧାକୁ ବଞ୍ଚାଇ ରଖିଛି ଯେପରି। ସବୁକିଛି ଉର୍ଦ୍ଧ୍ୱରେ ଆଦିମ ବିବର୍ତ୍ତନ, ଯାହା ନିରବଧି ଯାବତ୍ ଚନ୍ଦ୍ରାର୍କେ ଗତିଶୀଳ ହୋଇ ରହିଛି।

କବିଙ୍କ ଭାଷାରେ —

ପ୍ରଥମ ପୃଥିବୀର ଅବିଭାଜ୍ୟ ଶ୍ରେଣୀ ସରୀସୃପର ପରି
କେଉଁ ସମ୍ଭାବ୍ୟ ଭ୍ରୁଣର ବିକାଶ ଆକାଂକ୍ଷା
ଉଭୟର ମାଂସ ଆଉ ରକ୍ତର ପଲସ୍ତରା ତଳେ
ଅଙ୍କୁରିତ ହେଲା
ତାହାର ଚିତ୍କାରର ପ୍ରତିଧ୍ୱନି
ସେଇ ଜୈବିକ ପ୍ରକୃତିର ଉଦଗ୍ର ପ୍ରକାଶ ଆକାଂକ୍ଷା
ନିଜ ମଧ୍ୟେ କରିଥିଲି ଅନୁଭବ
ଲଘୁ ସ୍ୱଚ୍ଛ ଆଉ ଚିରନ୍ତନ
ଆଦିମ ପୃଥିବୀ ପରି ଅତି ପରିଚ୍ଛନ୍ନ। (ସରୀସୃପ)

କବି ଅନେକତ୍ର କପୋତ-କପୋତୀ, ଶୁଆ-ସାରୀଙ୍କର କଥୋପକଥନ ଜରିଆରେ ନାରୀ-ପୁରୁଷର ଯୁଗ୍ମ ଜୀବନର ଚିରନ୍ତନତାକୁ ବର୍ଣ୍ଣନା କରିଛନ୍ତି। କବି ସେଇ ଯୁଗ୍ମ ଜୀବନର ମାଧୁର୍ଯ୍ୟ ଓ ତା'ର ଚିରନ୍ତନତାକୁ ମାର୍ମିକ ଭାବେ ବର୍ଣ୍ଣନା କରିଛନ୍ତି। ନିତ୍ୟକାଳର ପ୍ରଜନନ, ଗର୍ଭାଧାନ, ବଂଶବିସ୍ତାର ଜନିତ ଜୀବନ ଲୀଳାକୁ କବି ନାନା ଭାବରେ ବର୍ଣ୍ଣନା କରିଛନ୍ତି।

ତାଙ୍କ ଭାଷା ଶୈଳୀରେ ଛନ୍ଦର ମାଧୁର୍ଯ୍ୟ ବାରି ହୋଇପଡ଼େ। ତାଙ୍କୁ ଓଡ଼ିଆ

ସାହିତ୍ୟର ଓମାରଖୟାମ ବୋଲି ହୁଏତ କୁହାଯାଇପାରେ, ଯିଏ ସର୍ବତ୍ର ସବୁଦିଗ୍‌ବଳୟରେ ରତିରାସକୁ ହିଁ ଦେଖିଛନ୍ତି।

*ସରୀସୃପ*ର ବିଷୟ ପରିସର ଅତ୍ୟନ୍ତ ବ୍ୟାପକ ତଥା କାବ୍ୟସ୍ୱର ଅତି ବିଚତ୍ର। କବିଙ୍କର ଅନ୍ୟ ସମସ୍ତ କବିତାଗ୍ରନ୍ଥ ସରୀସୃପ କବିତାଗ୍ରନ୍ଥପରି ନୁହେଁ। ଏହାର ବିଷୟଗ୍ରନ୍ଥ ଯେପରି ବ୍ୟାପକ ସେହିପରି ବହୁ ପ୍ରକାରର କାବ୍ୟସ୍ୱର ଏଥିରେ ସନ୍ନିବେଶିତ ହୋଇଛି।

କବି ବିନୋଦ ଚନ୍ଦ୍ର ନାୟକ କେତେବେଳେ ପ୍ରକୃତିବାଦୀତ କେତେବେଳେ ଅତିବାସ୍ତବବାଦୀ, ହେଲେ ସେ ସବୁବେଳେ ସ୍ୱୈରବାଦୀ। ଏପରିକି ସରୀସୃପରେ ମଣିଷର ଜାନ୍ତବ ଆଦିମତାକୁ ସେ ଚିତ୍ରଣ କରିଥିଲେ ହିଁ ଉଭୟ-*ସରୀସୃପ* ତଥା *ଉଲଙ୍ଗରୁଦ୍ର* କବିତା ଗ୍ରନ୍ଥଦୁଇଟି ସ୍ୱୈରବାଦୀ ଆବର୍ତ୍ତ ଭିତରୁ ମୁକ୍ତ ହୋଇ ପାରିନି।

କବି ପ୍ରତିଟି ଉଚ୍ଚାରଣରେ ପ୍ରଣୟ ମଧୁବର୍ଷଣର ଘନଘୋର ମେଦୁରତାକୁ ଯେପରି ଅନୁଭବ କରିଛନ୍ତି। ଏହି ଢ଼ାଂଚାଟି ତାଙ୍କ କବିତାରେ ଏତେ ବଳଶାଳୀ ଯେ ତାଙ୍କ କବିତାର ଅଲଗା ପ୍ରଭାବ ବାରି ହୋଇ ପଡ଼େ । '*ସରୀସୃପ*' କବିତା ଗ୍ରନ୍ଥଟି ପୁରୁଷାନୁକ୍ରମିକତା, ଅନିର୍ବାର୍ଯ୍ୟ ସଙ୍ଗମଲାଳସା, ଆଦିମ ସରୀସୃପୀୟ ସାନିଧ କ୍ଷୁଧା, ଚିରନ୍ତନ ନରନାରୀ ସଂପର୍କକୁ ହିଁ ମୁଖ୍ୟତଃ ପ୍ରତୀକିତ କରିଛି।

ଯୌନ କାମନା ମଣିଷ ଜୀବନରେ ଅନନ୍ତ କାଳର କ୍ଷୁଧା ପରି, ଯାହା କେବେ ପ୍ରଶମିତ ହେବାର ନୁହେଁ। ଯୁଗ ଯୁଗ ଧରି ମଣିଷ ନିଜ ମେରୁଦଣ୍ଡ ତଳେ ସେ ପ୍ରସୁପ୍ତ କ୍ଷୁଧାକୁ ଅନୁଭବ କରି ଆସୁଛି—

ଏଇ ପ୍ରଶ୍ନ
ସମାଧାନ ହୀନ, ଏ ପ୍ରଶ୍ନ ହୁଏତ ସଂପର୍କ ବିହୀନ
ପ୍ରାଗୈତିହାସିକ ସରୀସୃପର ଯୌନପ୍ରକାଶ ଆକାଂକ୍ଷା
ଆଜି ଅନୁଭବ କରେ
ନିଜ ମେରୁଦଣ୍ଡ ତଳେ
ଆଉ ଖୋଜିବୁଲେ ।

କବି ପୁଣି ନିରତ ଦୂରପଥର ସନ୍ଧାନୀ। ମାଟିର କବିତା ସେ ଗାଆନ୍ତି ଅଥଚ ମନପ୍ରାଣରେ ଆକାଶମୁଖୀ। କବି ବାସ୍ତବବାଦୀ ଯେମିତି ବିଳାସୀ ବି ସେମିତି।

କବିଙ୍କ *ଇଳାବୃତ୍ତ* କବିତା ଗ୍ରନ୍ଥର ପ୍ରଥମ କବିତା '*ଆକାଶର କବିତା*'ର ପ୍ରଥମ କେଇଧାଡ଼ି ତାଙ୍କ ବିଳାସ ପ୍ରବଣତା ତଥା ଆକାଶମୁଖୀନତାର ପ୍ରମାଣ।

ସେ ଲେଖିଛନ୍ତି:—

ସଖି ମୁହିଁ ଯେ ଆକାଶ ବିଳାସୀ
ଦୂର ତାରା ସଙ୍କେତ ଅୟନେ।

ବସି ଲେଖେ ମୁଁ ମାଟିର କବିତା
ରୂପ ବିଳାସେ ମେଘର ଶୟନେ।

('ଆକାଶର କବିତା')

କବି ବିନୋଦ ଚନ୍ଦ୍ର ନାୟକଙ୍କ ପଳାୟନବାଦୀ ପ୍ରବଣତା, ଦୂର ନିର୍ଜନ ପୃଥିବୀ ପ୍ରତି ସମ୍ମୋହନ, କିଛିଟାର ହସ୍ୟବାଦୀ ଅନୁଚିନ୍ତା ତଥା ଆକାଶ ମୁଖୀନତାକୁ ଲକ୍ଷ୍ୟ କରିତାଙ୍କୁ 'ବୈଦେଶିକୀ' ବୋଲି ଆକ୍ଷେପ କରାଯାଇଛି, କାରଣ ଏପରି କାବ୍ୟ ଚେତନା ଆମ କାବ୍ୟଧାରାରେ ଆଦୌ ପାରଂପରିକ ନୁହେଁ।

ଏପରି କାବ୍ୟ ଚେତନା ଯେମିତି ବୈଦେଶିକ ସେମିତି ନୂତନତାର ଇନ୍ଦ୍ରଜାଲ। ଓଡ଼ିଶାର ସୁବିପୁଳ ସାରସ୍ୱତ ପରଂପରା, ସାମାଜିକ ମୂଲ୍ୟବୋଧ, ସାଂସ୍କୃତିକ ପ୍ରସଙ୍ଗ ନିଷ୍ଠତା (Cultural context) ବିନୋଦ ନାୟକଙ୍କ କବିତାରେ ଗୌଣ ସ୍ଥାନ ଅଧିକାର କରିଥିବା ଭଳି ମନେହୁଏ।

କବି ଜୀବନରେ ସେ ଅତ୍ୟନ୍ତ ଆତ୍ମମଗ୍ନ ଥିଲେ। ଆକାଶ ଓ ପରୀପ୍ରେମ କଥା ବିଶେଷ ଲେଖିଯିବାରୁ ସେ ମାଟିର ଐତିହ୍ୟ ଓ ବାସ୍ତବତା ଠାରୁ ଯେମିତି ଦୂରକୁ ଘୁଞ୍ଚି ଯାଇଥିଲେ। ସମାଲୋଚକ ତଥା ସାହିତ୍ୟ ଇତିହାସ ଲେଖକ ଡକ୍ଟର ମାୟାଧର ମାନସିଂହ ମନ୍ତବ୍ୟ ଦେଇ କହିଛନ୍ତି, ଏଇ ନୂତନମାନଙ୍କ ସହିତ ଆଉଦଳେ ଦେଖା ଦେଇଛନ୍ତି । ଯେଉଁମାନେ ଆତ୍ମକୈନ୍ଦ୍ରିକ ନୁହନ୍ତି ସତ, କିନ୍ତୁ ସେମାନେ ସେମାନଙ୍କର ସମସ୍ତ ଭରସା ଢ଼ାଳି ଦେଇଛନ୍ତି ଅପରିଚିତ, ଅଦେଖା ତ ଅନିକଟ ଉପରେ–ତାକୁଇ ନୂତନତାର ଶ୍ରେଷ୍ଠ ଲକ୍ଷଣ ଧରି। ଏମାନଙ୍କ ନିକଟରେ ଓଡ଼ିଶା ତାର ମାଟି, ତାର ଇତିହାସ ଓ ସଂସ୍କୃତିର କୌଣସି ଅର୍ଥ ନାହିଁ। ମର୍ତ୍ତ୍ୟ ହେବାକୁ ହେଲେ ଲେଖକ ନିଜକୁ ସଂପୂର୍ଣ୍ଣ ରୂପେ ଐତିହ୍ୟ ମୁକ୍ତ ଓ ସ୍ଥାନୀୟ ଚେତନାଶୂନ୍ୟ ହୋଇଯିବାର ଦେଖାଇ ଦେବା ଦରକାର ବୋଲି ବୋଧହୁଏ ଏମାନଙ୍କର ବିଶ୍ୱାସ। ଏ ଦଳର ଅଗ୍ରଣୀ ହେଉଛନ୍ତି ବିନୋଦ ଚନ୍ଦ୍ର ନାୟକ। ଏ"

ଓଡ଼ିଶାର ଏକ ଦୂର ପ୍ରାନ୍ତୀୟ ଅଞ୍ଚଳର ପଲ୍ଲୀ ଗ୍ରାମରେ ବସି ନାୟକେ ନିଜର ଚତୁଃପାର୍ଶ୍ୱକୁ ଏକାବେଳକେ ଭୁଲିଯାଇ ଦୀର୍ଘ ଭୈରବ ରଜନୀର ନିସଙ୍ଗତା ଅରୋରା ଜୋରିଆଲିସର ଆଲୋକ ଛଟା, ବିଷୁବୀୟ ଆଫ୍ରିକାରେ ବାନର ମାନଙ୍କର ନୃତ୍ୟ ବା ଜାଂଜିବର ଦ୍ୱୀପ–ସୁନ୍ଦରୀମାନଙ୍କର ଲବଙ୍ଗପୁଷ୍ପ ତୋଳିବା ବେଳର ସ୍ମିତି ହାସ୍ୟକୁ ବର୍ଣ୍ଣନା କରିଥାନ୍ତି।

ବିନୋଦ ନାୟକଙ୍କ କବିତାରେ ତାଙ୍କ ବିଦ୍ରୋହାତ୍ମକ ସ୍ୱର ପ୍ରକଟିତ। ଏ ପୃଥିବୀରେ ସୁସ୍ଥ ଓ ସ୍ୱାଧୀନ ଭାବେ ବଞ୍ଚିବାର ପରିବେଶ ନାହିଁ ବୋଲି ଯେମିତି କବି ବିନୋଦ ନାୟକ ଅନୁଭବ କରିଛନ୍ତି। ଏ କ୍ଲେଦାକ୍ତ ପୃଥିବୀକୁ ତାଙ୍କୁ ବରଂ ଦୁର୍ବହ ଲାଗିଛି।

ଗଭୀର ପ୍ରଣୟାନୁଭୂତି, ତଦ୍‌ଜନିତ ବିଷାଦ ଏ ପୃଥିବୀର ଅକ୍ଷାଂଶ ଦ୍ରାଘିମା ଠାରୁ ବହୁଦୂର ନିର୍ଜନ ଭୂଗୋଳକୁ ଭଲପାଇବାରେ ସେ ଅତି ମାତ୍ରାରେ ରୋମାଣ୍ଟିକ୍। ସେ ଦୃଷ୍ଟିରୁ ସେ ତାଙ୍କ ସମସାମୟିକ ଅନେକ ଓଡ଼ିଆ ରୋମାଣ୍ଟିକ୍ କବିଙ୍କ ଠାରୁ ବାରି ହୋଇ ପଡ଼ନ୍ତି। ସେ ଦୃଷ୍ଟିରୁ ସେ ଉଗ୍ର ରୋମାଣ୍ଟିକ ଥିଲେ। ତାଙ୍କ କବିତାରେ ମାତ୍ରାଧିକ ସ୍ୱୈରବାଦୀ କାବ୍ୟ ଚେତନା ଉଦ୍ଭାସିତ ହୋଇଛି।

ସେଦିନର ସାମାଜିକ ଜୀବନ ତାଙ୍କୁ ଯେମିତି ଦୁର୍ବହ ଲାଗିଥିଲା। ସଜନୀ ସହିତ ପ୍ରଣୟରେ ମତ୍ତ ହେବାପାଇଁ ସେ ଦିନର ପରିବେଶ ସେମିତି ନଥିଲା, ସେପାଇଁ ସେ ପଳାୟନ ପନ୍ଥୀ ସାଜିଛନ୍ତି।

ଆହରଣ କରିବାରେ ବିନୋଦ ଚନ୍ଦ୍ର ନାୟକଙ୍କ ପାରଦର୍ଶିତା ଏକାନ୍ତ ଉଲ୍ଲେଖଯୋଗ୍ୟ। ସବୁଜ କାବ୍ୟାଦର୍ଶ ତଥା ରବୀନ୍ଦ୍ର କବିତାର ପ୍ରଭାବ କବି ବିନୋଦ ନାୟକଙ୍କ କାବ୍ୟ ଚେତନାକୁ ବିଶେଷ ଭାବେ ପରିପୁଷ୍ଟ କରିଥିଲା। ପ୍ରେମ ଓ ବିପ୍ଳବର ସ୍ୱର ସେପାଇଁ ତାଙ୍କ କବିତାରେ ପ୍ରତିଭାତ ହୋଇଛି।

'*ବିଦାୟ ବିପ୍ଳବ*' ଓ '*ପରାଜୟ*' କବିତା ଦୁଇଟି ତାଙ୍କ ବୈପ୍ଳବିକ ଚେତନାର ପରିଚୟ ଦିଏ। 'ବିଜୟୀ ମୁଁ ନୁହେଁ ସଖୀ, ରଣେ ହେଲା ମୋର 'ପରାଜୟ' ସୂଚନା ବ୍ୟତୀତ ତାଙ୍କ ବିପ୍ଳବୀ ମନର ଅନ୍ୟ ବିଶେଷ ଉଚ୍ଚାରଣ ଦୁର୍ଲଭ ପ୍ରାୟ।

*ହୈମନ୍ତୀ* ତାଙ୍କ ଛାତ୍ର ଜୀବନରେ ପ୍ରକାଶିତ କବିଙ୍କ ପ୍ରଥମ କବିତା ସଙ୍କଳନ, ଯେଉଁଥିରେ 'ପ୍ରତିମାଦର୍ଶନ', 'ହୈମନ୍ତୀ', 'ଜୀବନ ରାଧା', 'ଶୃଙ୍ଗାର', 'ବୁକୁରବୀଣା', 'ନୀରାଜନା' ଆଦି କବିତା ସଂକଳିତ ହୋଇଛି।

ପ୍ରେମ, ଶୃଙ୍ଗାର, ପ୍ରକୃତି ଚିତ୍ର, ନାରୀ ଆଦି ବିଷୟ ତାଙ୍କ ଆଦ୍ୟକବି ଜୀବନରେ ଯେପରି ରସନିବିଡ଼ ଅଭିବ୍ୟକ୍ତି ଲାଭ କରିଛି ବିପ୍ଳବ ବୋଧର ସେଭଳି ସୂଚନା ନାହିଁ।

'ଜୀବନରାଧା'ରେ କବି ଲେଖିଛନ୍ତି—

'ମାନସ ନଦୀ କୂଳେ
ପଥର ଦୀପ ମୂଳେ
କାହାର ବେଣୁ ଆଜି ବାଜିଲା।
ସେ ଗାନେ ହୋଇ ଭୋର
ଜୀବନ ରାଧା ମୋର
ଅଭି ସାରିକା ବେଶ ସାଜିଲା।'

ସେହିପରି କବି ବିନୋଦ ଚନ୍ଦ୍ର ନାୟକଙ୍କର '*ଶୃଙ୍ଗାର*' କବିତା–

'ଲେଖିଲି କରି ସେ ବିଚିତ୍ର
ସ୍ତନେ ତା'ର କସ୍ତୁରୀ ଚିତ୍ର

ଶୋଣିତ ଅଳତା କରି ଗାର ଟାଣି ଆଣିଲି ଯୁଗଳ ଲଳିତ ପଦପର୍ଣ୍ଣେ
କହିଲା ଏ ଶୃଙ୍ଗାର ରଚନା ହେ ପ୍ରିୟତମ
ତୁମପାଇଁ ନିଅ ହୁଏଁ ଧନ୍ୟ ।'

ସୁନ୍ଦରଗଡ଼ ଯାହାକୁ ଓଡ଼ିଶାର ବିଶିଷ୍ଟ ଆଧୁନିକ କବି ସଚ୍ଚିଦାନନ୍ଦ ରାଉତରାୟ 'ଭାନୁମତୀର ଦେଶ' ବୋଲି ଅଭିହିତ କରିଛନ୍ତି ତା'ର ଆରଣ୍ୟକ ପ୍ରକୃତି ଥିଲା ବିନୋଦ ଚନ୍ଦ୍ର ନାୟକଙ୍କ କବିତ୍ୱ ଉପର ମୂଳଭୂମି। ସେ ଥରେ ତାଙ୍କର ଜଣେ ସାହିତ୍ୟିକ ବନ୍ଧୁଙ୍କୁ ଲେଖିଥିଲେ: 'ଘର ମୋର ସୁନ୍ଦରଗଡ଼। କେବେ ବେଦବ୍ୟାସ ପରା ଏଠାରେ ମହାଭାରତ ରଚନା କରିଥିଲେ। ସଂସ୍କାର ସେତିକି ମାତ୍ର। ନିରାଟ ପାହାଡ଼ ଆଉ ଆୟୁହୀନ ନଦୀ। ବାସ୍ ଏତିକି ମାତ୍ର ମୋର କାବ୍ୟାରମ୍ଭର ଭୂମିକା।

ସୁନ୍ଦରଗଡ଼ର ଜଙ୍ଗଲ, କଙ୍କରିଳ ଭୂମି, ଘୁମନ୍ତ ପାହାଡ଼, ନିବିଡ଼ ବନସ୍ପତି, ଶୋଭାବନ୍ତ ଦିଗ୍‌ବଳୟ, ଯେତେସବୁ ଝାଡ଼ଜଙ୍ଗଲ, ତା'ର ଜାଙ୍ଗୁଲୁ ଜାଙ୍ଗୁଲୁ ଅନ୍ଧାର, ଯେତେ ପାଂଶୁଳ ଜହ୍ନରାତି ତାଙ୍କୁ ତାଙ୍କ ପ୍ରାଥମିକ କବି ଜୀବନକୁ ବିଶେଷ ଭାବେ ପ୍ରବୋଧିତ କରିଥିଲା।

ଏହି ଆଞ୍ଚଳିକ ପ୍ରକୃତି ଏତେ ସଶ୍ରଦ୍ଧ ଅଭିବ୍ୟକ୍ତି ଲାଭ କରିଛି ତାଙ୍କ 'ଗ୍ରାମପଥ' କବିତାରେ ଯେ, ସେ ଏହି ଗୋଟିଏ କବିତା ପାଇଁ ଓଡ଼ିଶାର ଜଣେ ଅତି ଲୋକପ୍ରିୟ କବି ହୋଇ ପାରିଛନ୍ତି। ସେ ଏଇ ଗୋଟିଏ କବିତା ପାଇଁ ଓଡ଼ିଶାର ଆବାଳ ବୃଦ୍ଧ ବନିତାଙ୍କର ଅତିପ୍ରିୟ କବି ହୋଇପାରିଛନ୍ତି।

ଦୂରତମ ଭୂଗୋଳ, ଦୂର ନଈକୁ ଲେଖି କବି ବିନୋଦ ଚନ୍ଦ୍ର ନାୟକ ଓଡ଼ିଶାର ସାରସ୍ୱତ ଆକାଶରେ ଗୋଟିଏ ଉଜ୍ଜ୍ୱଳ ଜ୍ୟୋତିଷ୍କ ହୋଇ ପାରିଛନ୍ତି। ଓଡ଼ିଶାର ସେ ଜଣେ ବହୁ ପରିଚତ କବି ବ୍ୟକ୍ତିତ୍ୱ।

ତାଙ୍କ କବିତାରେ ସୁଦୂର ପ୍ରତି ଉତ୍ସୁକତା ଯେପରି ଉଦ୍ଭାସିତ ଅତୀତର ସ୍ମୃତି ପ୍ରତି ଆମୁଖତା ମଧ ସେହିପରି ଅତ୍ୟନ୍ତ ତୀବ୍ର। କବି ଭାବରେ ତାଙ୍କ ଚିନ୍ତା, ଚେତନା, ସ୍ୱପ୍ନ, କଳ୍ପନା ସବୁକିଛି ଅଧିକାଂଶରେ ନାରୀ କୈନ୍ଦ୍ରିକ। ପ୍ରକୃତି ହେଉଛି ତାଙ୍କର ସେହି ବିପୁଳ ନାରୀ ଚିତ୍ରଣର କେନଭାସ ବା ଭୂମି।

ଏ ପ୍ରସଙ୍ଗରେ କବି କେତେ ଅଧିକ ପ୍ରଣୟ ବିଳାସୀ ତାଙ୍କ ରଚିତ '*ଅଳପ ବିସ୍ତର*' ତଥା '*ଏକ ରାତ୍ରିର ସଖୀ*' ଶୀର୍ଷକ ଦୁଇଟି କବିତାକୁ ଉଲ୍ଲେଖ କରାଯାଇ ପାରେ।

'ପ୍ରାଣ ମାଗେ ଖାଲି ଟିକିଏ ସ୍ପର୍ଶ, ଟିକିଏ ପ୍ରଣୟ ଛନ୍ଦ
ବାସୀ କବରୀର ଶାଢ଼ି ସେମିଜିର ତରୁଣୀ ଦେହର ଗନ୍ଧ'
('ଅଳପ ବିସ୍ତର')

ତୁମେ ନାହିଁ ଆଜି ଶୂନ୍ୟ ଭୁବନ ବନ୍ଦସେ ବାତାୟନେ
ତଥାପି ତୁମରି ନାଲିକାଚ ଗୁଣୁଖୁଣୁ ଅନୁଭବି ମନେ
ଆଜି ବି ଏପଥ ପାଶେ ଛିଡ଼ାହୋଇ ପ୍ରିୟତବ ପରବାସୀ
ଭାଳେ କାହିଁ ତା'ର ସେଦିନର ଘନ ଯଉବନୀ ମଦାଳସୀ
--- ପାଦରେ ଅଳତା ଲାଗି
ପ୍ରତି ଘାସ ଶିରେ ଅଭି ସାରିକାର ଚିହ୍ନ ଯେ ଥିଲା ଜାଗି।

('ଏକ ରାତ୍ରୀର ସଖୀ')

ମାତ୍ରାଧିକ ପ୍ରଣୟାତୁରଣ ତାଙ୍କ କବିତାରେ ପରିଲକ୍ଷିତ। ସେପାଇଁ ଦୂର ନିର୍ଜନ ନୀରବତ ପୃଥିବୀର ସେ ସନ୍ଧାନୀ ହୋଇଛନ୍ତି, ଯେଉଁଠି ସ୍ୱପ୍ନମୟ ଅଫିମ ଫୁଲର ମହକ, ବିପୁଳ ଛାୟାକୁଂଜ, ଅଙ୍ଗୁର କ୍ଷେତ, ବେଦୁଇନ ଦେଶର ବର୍ଣ୍ଣାଢ଼୍ୟ ଭୂଗୋଳ ତାଙ୍କୁ ଆତ୍ମହରା କରି ଦେଇ ପାରିବ।

ବିନୋଦ ଚନ୍ଦ୍ର ନାୟକ ହେଉଛନ୍ତି ଓଡ଼ିଶାର ଜଣେ କବି, ପ୍ରଣୟ ଚେତନା ଯାହାଙ୍କ କବି ଚିତ୍ତକୁ ବିଭୋର କରି ଦେଇଛି। ପୃଥିବୀର ବିଚିତ୍ର ଭୂଗୋଳ ତାଙ୍କୁ ଆବିଷ୍ଟ କରି ଦେଇଛି। ତାବାଦ ଏ ବସୁନ୍ଧରାର ରୂପ-ରସ-ରାଗକୁ ପ୍ରାଣରେ ଅନୁଭବ କରିବା ପାଇଁ ବିଧାତା ତାଙ୍କ ଚକ୍ଷୁରେ ସୌନ୍ଦର୍ଯ୍ୟଚେତନା ଭରି ଦେଇଥିଲେ ଯେପରି। ପ୍ରକୃତିକୁ ସେ ଯେପରି ବିଧାତାର ପବିତ୍ର ସୃଷ୍ଟି ବୋଲି ଉପଲବ୍ଧି କରିଛନ୍ତି, ନାରୀ ଦେହକୁ ସେହିପରି ସେ ପବିତ୍ର ଜ୍ଞାନ କରିଛନ୍ତି, ନାରୀ ଦେହର ସୌନ୍ଦର୍ଯ୍ୟକୁ ଅଭିଲିପିତ କରିବାରେ ସେ କେଉଁଠି ସଙ୍କୁଚିତ ହୋଇଯାଇ ନାହାନ୍ତି।

ସେ ଏ ପୃଥିବୀର ମରୁପ୍ରାନ୍ତର ପରି ମଣିଷର ନୈରାଶ୍ୟ, ଅପ୍ରାପ୍ତି, ବଞ୍ଚନା ଅବା ଦୁଃଖ ଓ ଦାରିଦ୍ର୍ୟର ବିକଳ ଚିତ୍ର ସବୁକୁ ଅଂକନ ନକରି ଚିତ୍ରଣ କରିଛନ୍ତି ଗଭୀର ଚିତ୍ତପୁଲକର ପ୍ରଣୟାନୁଭୂତିକୁ, ଶସ୍ୟ ଶ୍ୟାମଳା ପୃଥିବୀକୁ, ମେଘବଳୟିତ ଆକାଶର ଚନ୍ଦ୍ରକୁ, ଅଭିସାରିଣୀର ରତି ଆକାଂକ୍ଷାକୁ।

କବି କିପରି ସ୍ୱପ୍ନ ପାଗଳ ତା'ର ଅଭିବ୍ୟକ୍ତି ଘଟିଛି ତାଙ୍କ 'ସ୍ୱର୍ଣ୍ଣମୃଗ' କବିତାରେ।

ସାର୍ଥକ ସୃଷ୍ଟିର ମୁହିଁ ସ୍ୱପ୍ନ ଦେଖେ ବିରାଟ ସୃଜନ
ସାମାନ୍ୟର ପ୍ରୟୋଜନେ ଅସାମାନ୍ୟ ଲକ୍ଷ ଆୟୋଜନ
ସ୍ୱାସ୍ଥ୍ୟବତୀ ଧରଣୀରେ ତଥାପିତ ଏ ସ୍ୱପ୍ନ ଅସରା
ପିଚ୍ଛିଳ ସୋପାନଶ୍ରେଣୀ ସ୍ୱର୍ଣ୍ଣ ମୃଗ ନାହିଁ ଦିଏ ଧରା।

('ସ୍ୱର୍ଣ୍ଣମୃଗ')

ସ୍ୱର୍ଣ୍ଣମୃଗ ପଛେ ଧରା ନଦେଉ ତାପଛରେ ଧାଇଁବାର ସମ୍ମୋହନ ବରଂ ବ୍ୟାଥାତୁର ପୃଥିବୀରେ ବଞ୍ଚିବା... ଅଧିକ ଆନନ୍ଦ ଦାୟକ।

କେତେବେଳେ କେଉଁଠି ଜହ୍ନରାତିକୁତ, ଆଉ କେତେବେଳେ ବଣଭୂମିର ବର୍ଷା, କେତେବେଳେ ନୀଳ ନିବିଡ଼ ଆକାଶତ ଆଉ କେତେବେଳେ ଦୂରସ୍ଥ ନଈ ଆଉ କଳ୍ପନାର ଇଳାବୃତ୍ତକୁ କବି ବିନୋଦ ଚନ୍ଦ୍ର ନାୟକ ସରସ ଶବ୍ଦାବ୍‌ଳୀ ତଥା ଚମତ୍କାର ଛନ୍ଦ ଶୃଙ୍ଖଳା ଭିତରେ ଚିତ୍ରଣ କରିଛନ୍ତି। ମାତ୍ର ଏ ପ୍ରକୃତି ତାଙ୍କ ପ୍ରଣୟାନୁଭବର ଭୂମି ହୋଇଛି ଯେପରି।

ଦୂର ବା ନିକଟର ପ୍ରକୃତିକୁ ମନୋଲୋଭା କରି ଆଙ୍କିଥିଲେ ବି ସେ ପ୍ରକୃତି କବି ନୁହଁନ୍ତି, ବରଂ ପ୍ରଣୟ ବିଭୋର କବିଟିଏ ଯେ କାମ କାମିନୀ ଭାବ, ଅଭିସାରିଣୀର ଅଭିସାର, ରୋମାଞ୍ଚ, ମଧୁ ମିଳନ, ଅନନ୍ତ କାଳର ପ୍ରତୀକ୍ଷା, ବିରହ ମିଳନକୁ ଆହୁରି ଭାବଦ୍ୟୋତକ କରି ଲେଖିଛନ୍ତି।

କବି ଆମ ପୁରାଣର ପ୍ରସଙ୍ଗକୁ ଆଣି ପ୍ରଣୟାନୁଭୂତିକୁ ଆହୁରି ପ୍ରଭାବଦୀପ୍ତ କରି ଚିତ୍ରଣ କରି ପାରିଛନ୍ତି। ଚନ୍ଦ୍ର ପ୍ରସଙ୍ଗ ଅନ୍ୟତମ ପୁରାଣକଳ୍ପ ଯାହାକୁ କବି ପୁର୍ନସଂସ୍ଥାପନ କରିଛନ୍ତି। ତାଙ୍କର *'କୁମ୍ଭକାମୋଦୀ'* ତଥା *'ମେଘମହ୍ଲାର'* କବିତା ଦୁଇଟି ତାଙ୍କ ବିଭୋର ପ୍ରଣୟ ଚେତନାର ପ୍ରମାଣ।

ନୀଳ ଚନ୍ଦ୍ରର ଉପତ୍ୟକାରେ ସଂକଳିତ *'ଶୁଆସାରୀ'* କବିତାଟି ନାରୀ ଓ ପୁରୁଷ ମନସ୍ତତ୍ତ୍ୱକୁ ନିଖୁଣ ଭାବେ ଚିତ୍ରଣ କରିବାର ଅତି ସଫଳ କବିତାଟିଏ। ନାରୀ ଓ ପୁରୁଷର ସ୍ୱପ୍ନ, ମନ ଓ ଚେତନା ସଂପର୍କରେ ଅତି ସୁନ୍ଦର ଅନୁଶୀଳନ ହୋଇଛି ଏହି କବିତାରେ।

କବି ବିନୋଦଚନ୍ଦ୍ର ନାୟକ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତା କ୍ଷେତ୍ରରେ ଏକ ସୁପ୍ରତିଷ୍ଠିତ ନାମ। ଓଡ଼ିଆ କବିତାର ଭାବଚେତନା, ରୋମାଣ୍ଟିକ୍ କାବ୍ୟ ଆବେଗ, ଛନ୍ଦ, ଭାଷା ପରି ଯୋଜନା ଶୈଳୀ, ପ୍ରକାଶଭଙ୍ଗୀ ତଥା ସାମଗ୍ରିକ ଭାବେ ଓଡ଼ିଆ କବିତା ଧାରାକୁ ସେ ନୂତନ ସୌନ୍ଦର୍ଯ୍ୟ ପ୍ରଦାନ କରିଛନ୍ତି। ପାଠକର ରସ ବୋଧକୁ ଉଜ୍ଜାଗ୍ରତ କରିବାରେ ସେ ଜଣେ ଅଗ୍ରଣୀ କବି ବ୍ୟକ୍ତିତ୍ୱ।

ଅତୀତରେ, ପ୍ରାୟ ପ୍ରତିଟି ଯୁଗରେ ନାୟକ-ନାୟିକାଙ୍କର ପ୍ରେମ ପ୍ରଣୟ ପାଇଁ ପ୍ରକୃତି ଥିଲା ସତେଯେପରି ଏକ ଉଦ୍ଦୀପନ ବିଭାବ। ସେହି ପ୍ରକୃତିକୁ ନରନାରୀଙ୍କ ଶୃଙ୍ଗାର ରଚନାର ପ୍ରଶସ୍ତ କ୍ଷେତ୍ର ବୋଲି କବିଙ୍କ ତର୍କଣା ଯେପରି ମନୋଜ୍ଞ ସେହିପରି ପ୍ରତ୍ୟୟପୂର୍ଣ୍ଣ ହୋଇ ପାରିଛି।

ସେହି ଆଦିମ ପ୍ରକୃତି କୋଳରେ ନରନାରୀଙ୍କ ଶୃଙ୍ଗାରିକ ଇଚ୍ଛା ଯେପରି ଆହୁରି ଦୀପ୍ତ, ଆହୁରି ସୃଜନଶୀଳ ହୋଇ ଯାଇଛି ଓ ପ୍ରେମୀଯୁଗଳଙ୍କ ପ୍ରାଣ ଯେପରି ଆହୁରି ଉଦାର ଆଉବିନୀତ ହୋଇ ଯାଇଛି।

ପ୍ରକୃତି ପ୍ରତି କବି ବିନୋଦ ନାୟକଙ୍କ ଏହି ଦୃଷ୍ଟିଭଙ୍ଗୀ ଅନେକ ଦୃଷ୍ଟିରୁ ଏକାନ୍ତ ଉଲ୍ଲେଖଯୋଗ୍ୟ। ଆମ ଜୀବନର ଏକାନ୍ତ ପ୍ରଶସ୍ତ ଓ ଅପରିବର୍ତ୍ତନୀୟ ଲୀଳାଭୂମି ହେଉଛି

ଏ ପ୍ରକୃତି। 'ନିଶିର ଡାକ' କବିତାରେ କବି ଲେଖିଛନ୍ତି:

ଚାଲିଲା ପଥରେ ମିଳେ ତେଣୁ ଯଦି ଫୁଲ
ବାସୀ ନହେଉଣୁ ଆଘ୍ରାଣ କରିନିଅ,
ବିଶ୍ରାମ ପାଇଁ ପାତିଲେ ପଣତ କେହି
ପ୍ରଣାମ କରରେ ସେହି ତୋର ବରଣୀୟ।

ମଣିଷର ଜୀବନ ଚକ୍ରକୁ କବି ନାନାମତେ ଚିତ୍ରଣ କରିଛନ୍ତି। ଅନନ୍ତ କାଳର ସେହି ଲୀଳାପାଇଁ ଜୀବନ ନିବେଦିତ ହେବା ଆବଶ୍ୟକ ବୋଲି ସେ ଯେମିତି ଉପଲବଧି କରିଛନ୍ତି। ଏ ପୃଥିବୀର ଚିରନ୍ତନ ଜୀବନଲୀଳା ଓ ତା'ର ମହାମିଳନ ହିଁ ଶାଶ୍ୱତ। ଏହା ସାର୍ବଜନୀନ ଓ ସର୍ବକାଳୀନ। ମରୁପ୍ରାନ୍ତର ଠାରୁ ଗଣିକା ବସ୍ତିଯାଏ ଏ ଜୀବନଲୀଳା ସର୍ବବ୍ୟାପ୍ତ।

ରତି ତେଣୁ ଆଦୌ ଜୀବନର ଏକ ମଳିନ ଚିତ୍ର ନୁହେଁ, ବରଂ ସ୍ୱର୍ଗୀୟ । ଆତ୍ମ ନିବେଦନରେ ଅନେକ ପ୍ରସାରିତ ହୁଏ।

ପୃଥିବୀର ପୀଡ଼ା ଓ ସନ୍ତାପ, ଶୋଷଣ କଷଣ କବିଙ୍କୁ ସର୍ବଦା ବ୍ୟଥିତ କରିଛି। କବି ସେମିତି ଅସମାନ ଓ ଶୋଷଣ ଯୁକ୍ତ ପରିବେଶରୁ ବିଦାୟ ନେବାପାଇଁ ସର୍ବଦା ବ୍ୟାକୁଳ ହୋଇ ଉଠିଛନ୍ତି।

ଜୀବନ ତୃଷ୍ଣାକୁ ଚରିତାର୍ଥ କରିବା ଗଭୀର ପ୍ରାଣ ପ୍ରାଚୁର୍ଯ୍ୟ ଭିତରେ ଜୀବନ ବଞ୍ଚିବା ଆଉ ପ୍ରକୃତି କୋଳକୁ ସର୍ବୋତ୍ତମ ମନେ କରିବାରେ ସାର୍ଥକତା ରହିଛି।

ତାଙ୍କ କବି ହୃଦୟ ଯେପରି ଗାଇ ଉଠିଛି ଯେ, ଏ ସଂସାରରେ ପ୍ରେମହୀନ ଜୀବନ ଗୋଟେ ଅସଫଳ ବନ୍ଧ୍ୟା ଜୀବନ।

ରସ ଉଚ୍ଛଳ ଆବେଗ ହିଁ ବସ୍ତୁତଃ ତାଙ୍କ କବିତାର ପ୍ରାଣ। ତାଙ୍କ କବିତା ପ୍ରକୃତରେ ପାଠକର ଅନ୍ତରୀଣ ରସ ଚେତନାକୁ ହିଁ ଆର୍ଦ୍ର କରି ଦେଇଛି।

ବିନୋଦ ନାୟକଙ୍କ କବିତା ପାଠକର ବୌଦ୍ଧିକ ଅବବୋଧକୁ ହୁଏତ ପରିପୁଷ୍ଟ କରି ପାରି ନଥାଏ ମାତ୍ର ପାଠକର ହୃଦୟକୁ ବିଗଳିତ କରିଦେବାରେ ତାଙ୍କ କବିତା ସର୍ବୋତ୍ତମ।

## ସାହିତ୍ୟ ସମାଲୋଚନା

ଜଣେ ବଡ଼ କବି ସମଭାବରେ ଜଣେ ବଡ଼ ସମାଲୋଚକ। କୁହାଯାଇଛି ଯେ ଆଗ ଦର୍ଶନ, ତାପରେ ଯାଇ କବିତା। କବିତାର ଧାରଣା ଜଣେ ବଡ଼ କବିଙ୍କ ଚେତନାରେ କ୍ରମଶଃ ବେଶ ପରିଚ୍ଛନ୍ନ ହୋଇଉଠେ।

କବି ବିନୋଦ ଚନ୍ଦ୍ର ନାୟକ ଯେପରି କବି, ସେହିପରି ଜଣେ ସାହିତ୍ୟ ସମାଲୋଚକ। ଇଂରାଜୀ ସାହିତ୍ୟର ଛାତ୍ର ଓ ଅଧ୍ୟାପକ ଭାବରେ ସେ ଦୀର୍ଘକାଳ ଧରି ଇଂରାଜୀ ସାହିତ୍ୟ ସହିତ ପରିଚିତ ଥିଲେ। ୟୁରୋପର ବହୁ ସାହିତ୍ୟ ଆନ୍ଦୋଳନ (Literary Movements) ବିଷୟରେ ସେ ସଚେତନ ଥିଲେ ଯାହାକୁ ସେ ଚର୍ଚ୍ଚା କରିଛନ୍ତି।

ଇଂରାଜୀ ସାହିତ୍ୟର ସ୍ୱୈରବାଦୀ ଯୁଗ ସଂପର୍କରେ ତାଙ୍କର ସବିଶେଷ ଧାରଣା ଥିଲା। ୱାଡ୍‌ସ୍‌ୱାର୍ଥ, ଶେଲୀ, କୀଟସ୍, ବାଇରନ ଆଦିଙ୍କ କବିତା ସବୁକୁ ସେ ଅନ୍ତର୍ଦୃଷ୍ଟି ଦେଇ ଅଧ୍ୟୟନ କରିଛନ୍ତି ଓ ସେ ବିଷୟରେ ବିସ୍ତୀର୍ଣ୍ଣ ଭାବରେ ତାଙ୍କର ମତ ଅଭିମତ ପ୍ରକାଶ କରିଛନ୍ତି।

କବିତା ସଂପର୍କରେ ସେ ସର୍ବଦା କଳାକୈବଲ୍ୟବାଦୀ ଦୃଷ୍ଟିଭଙ୍ଗୀ ପୋଷଣ କରିଛନ୍ତି।

ସେ କବିତାର ବ୍ୟାବହାରିକ ଦିଗକୁ ବଡ଼ ନାପସନ୍ଦ କରିଛନ୍ତି। କବିତା କୌଣସି ପରିସ୍ଥିତିରେ ପ୍ରଚାରସର୍ବସ୍ୱ ହେବା ଉଚିତ ନୁହେଁ ବୋଲି ସେ ମନେ କରିଛନ୍ତି।

କବି ଜୀବନରେ ତାଙ୍କର କୌଣସି ସ୍ଲୋଗାନ ନଥିଲା। ମାର୍କସବାଦୀଙ୍କ ଭଳି କବିତାର ପ୍ରଚାର ଧର୍ମିକତାକୁ ସେ ଆଦୌ ସ୍ୱୀକାର କରି ନାହାନ୍ତି। ଜୀବନ ସମାଜର ନାନା ଦିଗ ତାଙ୍କ କବିତାରେ ପ୍ରତିଫଳିତ ହୋଇଛି ଓ ସେ ବିଷୟରେ ସେ ଅବହିତ ଥିଲେ। ମାତ୍ର ମାର୍କସବାଦୀ ଦର୍ଶନ ସଚେତନତା ତାଙ୍କ କବିତାକୁ ପ୍ରଚାରଧର୍ମୀ କରିନାହିଁ।

ପ୍ରକୃତ ଭାବରେ ସେ ଜଣେ ରୋମାଣ୍ଟିକ୍ ସମାଲୋଚକ ଥିଲେ। କଳା ହେଉଛି କଳାସୃଷ୍ଟିର ଲକ୍ଷ୍ୟ. ବୋଲି ସେ ବିଚାର କରୁଥିଲେ।

କବିତାର ଆଙ୍ଗିକ ଓ ଆତ୍ମିକକୁ ନେଇ ସେ ସମାଲୋଚନା ଜରିଆରେ ନିଜର ଚିନ୍ତା ବ୍ୟକ୍ତ କରିଛନ୍ତି। ଓଡ଼ିଶା ସାହିତ୍ୟ ଏକାଡେମୀର ସଂପାଦକ ତଥା ଉପସଭାପତି

ଭାବରେ ସେ ଦୀର୍ଘ କାଳ ଧରି ତା'ର ମୁଖପତ୍ର *'କୋଣାର୍କ'* ସହିତ ସଂଶ୍ଳିଷ୍ଟ ଥିଲେ। କୋଣାର୍କର ଅନେକ ସଂପାଦକୀୟ ଲେଖାରେ ବିନୋଦ ଚନ୍ଦ୍ର ନାୟକ କବିତା ସଂପର୍କିତ ନିଜର ଧାରଣା ବ୍ୟକ୍ତ କରିଛନ୍ତି। କବିତାର ନୂଆ ଦିଗ ଉପରେ ଆଲୋଚନା କରିଛନ୍ତି ନିତ୍ୟକାଳ କବିତାର ଗୁଣ ଓ ଗୌରବ ପ୍ରତିପାଦନ କରିଛନ୍ତି।

କବିତା ବିଚାରରେ ସେ ଅଧିକରୁ ଅଧିକ ସାର୍ବଜନୀନ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଛନ୍ତି। କବିତା ମସ୍ତିଷ୍କ ଦେଇ ସୃଷ୍ଟି ନୁହେଁ ହୃଦୟ ଦେଇ ସୃଷ୍ଟି ବୋଲି ସେ ଦୃଢ଼ଯୁକ୍ତି ଉପସ୍ଥାପନ କରିଛନ୍ତି।

ସାହିତ୍ୟ ସମାଲୋଚନା ଦୃଷ୍ଟିରୁ କୋଣାର୍କର ଅନେକ ସଂପାଦକୀୟ ଅତ୍ୟନ୍ତ ମୂଲ୍ୟବାନ।

*'କବିତା ପରମେଶ୍ୱରୀ'* ବିନୋଦ ଚନ୍ଦ୍ର ନାୟକଙ୍କର ଏକ ଅନବଦ୍ୟ ସାହିତ୍ୟ ସମାଲୋଚନା ମୂଳକ ଗ୍ରନ୍ଥ। ସ୍ପେଣ୍ଡର, ଅଡେନ, ଲୁଇମାକ୍‌ନିସ୍ ସିଡଲୁଇସ୍ ଆଦି ଇଂରାଜୀ କବିଙ୍କ କାବ୍ୟ ଚେତନା ତାଙ୍କୁ ବିଶେଷ ଭାବେ ଅନୁପ୍ରାଣିତ କରିଥିଲା।

କବିତାର ବିଷୟ କେବଳ ପ୍ରକୃତି, ଈଶ୍ୱର, ନାରୀ ପ୍ରେମରେ ସୀମିତ ନୁହେଁ ବୋଲି ଇଂରାଜୀ ଆଧୁନିକ କବିମାନେ ବିଚାର କରୁଥିଲେ। କବିତା ମଧ୍ୟକୁ ଜ୍ଞାନ, ବିଜ୍ଞାନ, ମାର୍କସ୍‌ବାଦ, ରାଷ୍ଟ୍ରବିପ୍ଳବ, ସମାଜଗଠନ ଆଦି ବହୁ ବିଷୟ ପଶିଆସିଲା।

ଆଧୁନିକ କବିମାନେ ରୂଢ଼ିବାଦୀ ବିଚାର, ପାରଂପରିକ ଦୃଷ୍ଟି ଭଂଗୀ ପ୍ରାଚୀନ ସାମାଜିକ ମୂଲ୍ୟବୋଧକୁ ବିରୋଧ କରିଛନ୍ତି, ଯାହାର ପ୍ରଭାବ ବିନୋଦ ନାୟକଙ୍କ କାବ୍ୟ ଜିଜ୍ଞାସାକୁ ପ୍ରଭାବିତ କରିଥିଲା।

ପରାଧୀନ ଭାରତର ମୁକ୍ତି ସଂଗ୍ରାମ ସେତେବେଳକୁ ପ୍ରାୟ ଶେଷ ହୋଇ ଆସିଥିଲା ଯେତେବେଳେ କବି ବିନୋଦ ଚନ୍ଦ୍ର ନାୟକ କବିତା ସୃଷ୍ଟି କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଛନ୍ତି।

ପଳାୟନବାଦ ଥିଲା ବିନୋଦ ଚନ୍ଦ୍ର ନାୟକ କବିତାର ଏକ ବିଶିଷ୍ଟ ଦିଗ। ପଳାୟନର ଆବଶ୍ୟକତା ଅପେକ୍ଷା ତାଙ୍କୁ ବେଶୀ ଅନୁପ୍ରେରିତ କରିଥିଲା ପଳାୟନର ବିଳସିତା । ତାଙ୍କ କବିତାରେ ଛତ୍ରେ ଛତ୍ରେ ତାହା ପ୍ରତିଫଳିତ ହୋଇଛି। ବିନୋଦ ଚନ୍ଦ୍ର ନାୟକଙ୍କ ଇଳାବୃତ୍ତ ଓ ନୀଳଚନ୍ଦ୍ରର ଉପତ୍ୟକା କବିତା ଗ୍ରନ୍ଥ ଦୁଇଟି ତାଙ୍କ ସ୍ୱୈରବାଦୀ କାବ୍ୟ ଚେତନାର ମାଷ୍ଟର ପିସ୍। ସ୍ୱୈରବାଦୀ ଭାବ ବିଳାସରେ ସେ ବେଳେ ତାଙ୍କ ସମ ସାମୟିକ ଯୁଗପ୍ରବର୍ତ୍ତକ କବି ମାୟାଧର ମାନସିଂହଙ୍କ ଠାରୁ ବଳି ଯାଇଛନ୍ତି।

କବି ଓ ସାହିତ୍ୟ ସମାଲୋଚକ ବିନୋଦଚନ୍ଦ୍ର କବିତା ସଂପର୍କିତ ଦୃଷ୍ଟିଭଙ୍ଗୀ

ପୋଷଣ କରିବାରେ ଯେତେ ୟୁରୋପୀୟ କାବ୍ୟ ଚେତନା ପ୍ରଭାବିତ, ସେତିକି ରବୀନ୍ଦ୍ର ପ୍ରଭାବିତ ମଧ୍ୟ। ରବୀନ୍ଦ୍ର କାବ୍ୟ ଚେତନା ପ୍ରତି ତାଙ୍କ ଆତ୍ମାର ଅମାପ ସମର୍ଥନ ଓ ସ୍ୱୀକୃତି।

ମୁଖ୍ୟତଃ କବିତା ଆଲୋଚନା ସମ୍ବଳିତ ତାଙ୍କର କବିତା ପରମେଶ୍ୱରୀ କବିତାର ଗୁଣ ଓ ଗୌରବ ସଂପର୍କରେ ଅଧିକ ମୁଖର ହୋଇଛି। ତଥାପି ତାଙ୍କର ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀଟି ସେଥିରୁ ବେଶ ଜଣାପଡ଼େ।

ଉଭୟ କବି ଓ ସମାଲୋଚକ ଭାବେ ସେ ମୁଖ୍ୟତଃ ତାଙ୍କ ରୋମାଣ୍ଟିକ ଅବବୋଧର ପରିଚୟ ଦେଇଛନ୍ତି। ସେ ଏକାଧାରରେ ସ୍ୱୈରବାଦୀ ଓ ରହସ୍ୟବାଦୀ। ବାସ୍ତବ ପୃଥିବୀ ଅପେକ୍ଷା କଳ୍ପିତ ବିଶ୍ୱ ପ୍ରତି ସେ ଅଧିକ ଉତ୍ସୁକ ଥିଲେ। ତାଙ୍କର କବିତାଦର୍ଶରେ ତାହା ପ୍ରତିଫଳିତ ହୋଇଛି।

ତାଙ୍କ କବିତା ତାଙ୍କ ଜ୍ଞାନପୀଠିକ ସଂପ୍ରୀତି ତଥା ବିସ୍ତୀର୍ଣ୍ଣ ଭୂଗୋଳ ସଚେତନତାର ପ୍ରମାଣ। ସେ ଓଡ଼ିଆ ସାହିତ୍ୟ ବା ଭାରତୀୟ ସାହିତ୍ୟକୁ ଭଲ ପାଇବାକୁ ଯାଇ ବିଦେଶୀ ୟୁରୋପୀୟ ସାହିତ୍ୟ ପ୍ରତି ଆଦୌ ବିମୁଖ ହୋଇନାହାନ୍ତି। ବରଂ ସେ ବହୁ ୟୁରୋପୀୟ କବିଙ୍କ କବିତାକୁ ବିଶେଷ ଅନୁରାଗର ସହିତ ଗ୍ରହଣ କରିଛନ୍ତି।

## ଓଡ଼ିଆ କବିତା ଧାରାରେ କବିଙ୍କ ବୈଶିଷ୍ଟ୍ୟ

ବିନୋଦ ଚନ୍ଦ୍ର ନାୟକ ଓଡ଼ିଶାର ରୋମାଣ୍ଟିକ କବି ଭାବରେ ସମସ୍ତଙ୍କ ନିକଟରେ ପରିଚିତ। ତାଙ୍କର କାବ୍ୟ ପ୍ରତିଷ୍ଠା ଯେପରି ଏକାନ୍ତ ଉଲ୍ଲେଖଯୋଗ୍ୟ ତାଙ୍କର ଲୋକପ୍ରିୟତା ସେହିଭଳି ଅତ୍ୟନ୍ତ ବ୍ୟାପକ। ମେଟ୍ରିକ କ୍ଲାସ୍‌ରୁ ବିଶ୍ୱବିଦ୍ୟାଳୟର ଉଚ୍ଚତମ ଶ୍ରେଣୀ ପର୍ଯ୍ୟନ୍ତ ତାଙ୍କ କବିତା ପାଠ୍ୟରୂପେ ଦୀର୍ଘ କାଳଧରି ଚଳି ଆସୁଛି।

କବି ବିନୋଦ ନାୟକ ଦୂର ନିର୍ଜ୍ଜନ ପୃଥିବୀ ପ୍ରତି ହିଁ ଅଧିକ ସମ୍ମୋହିତ। ସେ ମାଡାଗାସ୍କର ସନ୍ଧ୍ୟା, ନୀଳନଦୀ, ଲବଙ୍ଗଦ୍ୱୀପ, ବେଦୁଇନ୍ ଦେଶକୁ ହିଁ ତାଙ୍କ କବିତାରେ ଆବେଗ ଦେଇ ଚିତ୍ରଣ କରିଛନ୍ତି। ଏହି ଦୂରତମ ପୃଥିବୀକୁ ଚିତ୍ରଣ କରିବାରେ ହିଁ ଓଡ଼ିଆ କାବ୍ୟ ଧାରାରେ ବିନୋଦ ନାୟକ ପ୍ରକୃତରେ ଅନନ୍ୟ। ରୋମାଣ୍ଟିକ୍ ଯୁଗର ଅନ୍ୟତମ ବିଶିଷ୍ଟ କବି ଓ ଅଗ୍ରଣୀ ସାହିତ୍ୟ ସମାଲୋଚକ ଡଃ ମାୟାଧର ମାନସିଂହ ତାଙ୍କୁ ଅତି ସ୍ପଷ୍ଟ ଭାବରେ 'ବୈଦେଶିକୀ' ବୋଲି ଅଭିହିତ କରିଛନ୍ତି। ଏହି ଦୂର ନିର୍ଜ୍ଜନ ପୃଥିବୀ ପ୍ରତି ଆକୃଷ୍ଟ ହେବା କବି ବିନୋଦ ନାୟକଙ୍କ କାବ୍ୟ ଚେତନାର ଏକ ବିଶିଷ୍ଟ ଦିଗ। ପଳାୟନ ବିଳାସୀତା ମଧ କବିଙ୍କର କାବ୍ୟଚେତନାର ଆଉ ଏକ ପ୍ରସ୍ଥ। ବାସ୍ତବ ପୃଥିବୀରୁ ଆପଣା ଚତୁଃପାର୍ଶ୍ୱର ରୁକ୍ଷତାରୁ ପଳାୟନ କରିବା ପାଇଁ ସେ ଅତ୍ୟନ୍ତ ବ୍ୟଗ୍ର।

ଦୂରତମ ପୃଥିବୀର ସବୁଜିମାର ଆଶା ଓ ଆନନ୍ଦ ଓ ତା'ର ସ୍ୱପ୍ନିଳତା କବିଙ୍କୁ ଯେପରି ପ୍ରଲୁବ୍ଧ କରିଛି। ତାଙ୍କର 'ଇଳାବୃତ୍ତ' କବିତା ଗ୍ରନ୍ଥ ଏହି ଦୂର ପୃଥିବୀ ପ୍ରତି ସମ୍ମୋହନ ଓ ପଳାୟନର ବିଳସିତାକୁ ଅଧିକ ରୂପାୟିତ କରିଛି।

ନିଜ ସମୟର ଜଣେ ପ୍ରଚଣ୍ଡ ପ୍ରତିଭାଧର ଅତୁଳନୀୟ ରୋମାଣ୍ଟିକ୍ କବି ଭାବେ ବିନୋଦ ଚନ୍ଦ୍ର ନାୟକ ପ୍ରତିଷ୍ଠିତ ଥିଲେ। ତାଙ୍କର ଶୈଳୀ ଯେପରି ବାରି ହୋଇ ପଡ଼େ ତାଙ୍କର ଭାଷା ଓ ଛନ୍ଦ ସେହିପରି ଅଲଗା ପ୍ରକାରର ତାଙ୍କ ପ୍ରଣୟ ଚେତନା ଓ ବକ୍ତବ୍ୟରେ ସବୁବେଳେ ସରସ ପାରସିକ ଠାଣି ପରିଲକ୍ଷିତ। ତାଙ୍କ କବିତାର ରସାନୁଭୂତି ହିଁ ମୁଖ୍ୟ। ଚେତନାରେ ନାରୀଭବେ ଓ ପ୍ରକୃତିପ୍ରାଣତା ତାଙ୍କୁ କଳ୍ପନାବିଳାସୀ ହେବାପାଇଁ ପ୍ରୋତ୍ସାହିତ କରିଛି। ଜୀବନମୟତାର ସର୍ବୋତ୍ତମ ଗୁଣ ତାଙ୍କ କବିତାରେ ଭରି ରହିଛି। ତ୍ରୋବାଡୋର କବିଙ୍କ ଭଳି ସେ ପ୍ରଣୟକୁ ଗଭୀରତର ପୁଲକ ଓ ଚିତ୍ତ ପ୍ରଶାନ୍ତି ଭିତରେ ଗୌରବାନ୍ୱିତ କରିପାରିଛନ୍ତି। ଜୀବନକୁ ମହାର୍ଘ ପ୍ରେମରେ ନିବେଦିତ କରି ଦେଖିବାର ତାଙ୍କର ଦର୍ଶନ କବିତାରେ ଉଦ୍‌ଭାସିତ ହୋଇଛି। ଜଣେ ସୁଫିବାଦୀ

ତ୍ରୋବାଡୋର କବିଙ୍କ ଭଳି ପ୍ରେମରେ ଆତ୍ମନିବେଦନ ତାଙ୍କ କବିତାକୁ ଏକାନ୍ତ ପ୍ରାଣସ୍ପର୍ଶୀ କରିଛି।

'ବିନୋଦ ନାୟକଙ୍କ କବିତାର ସମୁଦାୟ ପରିବେଶ ସଂପୂର୍ଣ୍ଣ ରୋମାଣ୍ଟିକ୍। ମୂର୍ତ୍ତ, ଅମୂର୍ତ୍ତ, ଦୃଶ୍ୟ ଓ ଦୃଶ୍ୟାତୀତ ସବୁ ଛବି ସେ କଳ୍ପନା ଦେଇ ଆଙ୍କିଛନ୍ତି। ନୀଳଚନ୍ଦ୍ର ଉପତ୍ୟକାର ପର୍ବତ ଘେରା ପରିବେଶ, ସୁମେରୁର ସନ୍ଧ୍ୟା, ମାଡାଗାସ୍କାର ଲବଙ୍ଗ କ୍ଷେତ, ସମୁଦ୍ର ପରିବେଷ୍ଟିତ ପୋହଳାଦ୍ୱୀପ, ସ୍ୱପ୍ନାଛନ୍ନ ସୁମେରୁ ଆଦି ଚିତ୍ର କବି ବିନୋଦ ନାୟକଙ୍କ କଳ୍ପନାର ନିଦର୍ଶନ। ତାଙ୍କର ପ୍ରକୃତି ପ୍ରାଣତା, ଗଭୀର ପୁଲକମୟ ପ୍ରଣୟାନୁଭୂତି, କଳ୍ପନା ବିଳାସ, ରହସ୍ୟବୋଧ ଆଦି ଏକ ସମନ୍ୱିତ ରୋମାଣ୍ଟିକ୍ ଅବବୋଧ ସୃଷ୍ଟି କରିଛି।

ତାଙ୍କ *ନୀଳଚନ୍ଦ୍ରର ଉପତ୍ୟକା* ତଥା *ଇଳାବୃତ୍ତ* ର ଭାଷା ଅଧିକାଂଶରେ ପ୍ରଣୟବିଭୋର ଚିତ୍ତର ଶୃଙ୍ଗାରକ ଉଚ୍ଚାରଣ। କବି ଲେଖିଛନ୍ତି ତାଙ୍କ *ସାତ ତାରାର ଦୀପ* ରେ—

"ଦେଖା ହୋଇଥିଲା ବେଳେ ତୋତେ ମୁଁ ଦେଖିଛି ସଖିରେ
କଜ୍ଜଳ ରେଖା ଅଙ୍କିତ ଥିଲା ଆଖିରେ,
ନୀଳ ମେଘପାଟ ତନୁତଟେ ଥିଲା
ଲଳିତ ବକ୍ଷ ନର୍ତ୍ତନଶୀଳା
ନୀବିବନ୍ଧନ ଅୟିରଂଭୋରୁ ମୁକୁଳି ଥିଲା ବି
ପହିଲେ।
ତୁମେ କହିଥିଲ, ଆସିବ ସଭିଏଁ ଶୋଇଲେ
ମେଘ ବଳୟିତ ଆକାଶେ ଚନ୍ଦ୍ର ନଇଁଲେ।"

('କୁମ୍ଭ କାମୋଦୀ')

ସଙ୍ଗୀତଧର୍ମିତା, ଛନ୍ଦଗତି, ଶବ୍ଦଯୁଗ୍ମତା ତଥା ଧ୍ୱନ୍ୟାନୁକୃତ ଶବ୍ଦ ଯୋଜନାରେ ବିନୋଦନାୟକ ଓଡ଼ିଶାର ଜଣେ ଚମତ୍କାର ବିନ୍ଧାଣି। କବିତାକୁ ସ୍ମୃତି ମଧୁର କରି ବିଶେଷ ଛନ୍ଦ ଭିତରେ ପରିବେଷଣ କରିବାରେ ବିନୋଦ ନାୟକ ସମକାଳୀନ ଓଡ଼ିଆ କବିମାନଙ୍କ ମଧ୍ୟରେ ଅଗ୍ରଣୀ ଓ ତାଙ୍କ କବିତା ସେ ଦୃଷ୍ଟିରୁ ବାରି ହୋଇ ପଡ଼େ।

ପ୍ରକୃତିକୁ ପୃଷ୍ଠଭୂମି କରି କବି ବିନୋଦ ଚନ୍ଦ୍ର ନାୟକ ତାଙ୍କ କବିତା ଗୁଡ଼ିକରେ ଯେଉଁ ପ୍ରଣୟ ଚିତ୍ର ଆଙ୍କିଛନ୍ତି ଓଡ଼ିଆ କବିତା ଧାରାରେ ତା'ର ବୈଶିଷ୍ଟ୍ୟ ରହିଛି। ତରଳ ପ୍ରେମର ଉଦ୍‌ବେଳନକୁ ଏତେ ମରମୀ କରି ସେ କବିତାୟିତ କରିଛନ୍ତି ଯେ ତାହା ବହୁଦୃଷ୍ଟିରୁ ଭିନ୍ନ ଏକ ଆସ୍ୱାଦନର ବିଷୟ ହୋଇ ପାରିଛି।

ଛନ୍ଦ ଯୋଜନାରେ ସେ ଅନେକଙ୍କ ଠାରୁ ଭିନ୍ନ। ତରୁଣ ପ୍ରବୀଣ ନିର୍ବିଶେଷରେ

ଅନେକଙ୍କ କଣ୍ଠରେ ତେଣୁ ତାଙ୍କ କବିତାର ଆବୃତ୍ତି। ସେ ଦୃଷ୍ଟିରୁ କବିଙ୍କ *ଇଳାବୃତ୍ତ* ଓ *ନୀଳଚନ୍ଦ୍ରର ଉପତ୍ୟକା* ଦୁଇଟି ବିରଳ କବିତା ଗ୍ରନ୍ଥ।

ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟରେ ଜୀବନ ପରିଧିରେ ଏକାନ୍ତ ମାନବୀୟ ପ୍ରେମକୁ ପ୍ରାୟ ଅଭିଲିପିତ କରାଯାଇ ନଥିଲା। ଅନେକ ଓଡ଼ିଆ କବି ପ୍ରେମ ପ୍ରଣୟକୁ କେବଳ ଶୃଙ୍ଖଳା ତତ୍ତ୍ୱ ଓ କାମ ଶାସ୍ତ୍ରୀୟ ସୂତ୍ର ଭିତରେ ଲେଖୁଥିଲେ। ଆଉ କେତେଜଣ ତ 'ପ୍ରେମ-ପ୍ରଣୟକୁ' 'ପରମ' ସହିତ ମିଶାଇବା ପାଇଁ ଚେଷ୍ଟା କରିଛନ୍ତି। ରାଧାକୃଷ୍ଣ, ରାମସୀତା, ଈଶ୍ୱର-ପାର୍ବତୀଙ୍କ ପ୍ରେମଲୀଳା ଏହି ପର୍ଯ୍ୟାୟର ପ୍ରାୟ। ସେଥିରେ ଉଲଙ୍ଗ ଶୃଙ୍ଗାରର ବହୁଳ ବର୍ଣ୍ଣନା ଥିଲେ ବି ଏକାନ୍ତ ଇନ୍ଦ୍ରିୟ ଗ୍ରାହ୍ୟ ପ୍ରେମର ଅନଳଂକୃତ ବର୍ଣ୍ଣନା ପରିଲକ୍ଷିତ ହୁଏନା। ଆଉ କେତେଜଣ ମଧ୍ୟଯୁଗୀୟ ଓଡ଼ିଆ କବି ତ ପ୍ରେମ ପ୍ରଣୟକୁ ଗନ୍ଧର୍ବ-ଗନ୍ଧର୍ବୀମାନଙ୍କ ମଧ୍ୟରେ ସୀମିତ କରି ରଖିଥିଲେ। ସେଥିରେ ସିମିତ କିଛି ପ୍ରାଣ ନଥିଲା। କବିବର ରାଧାନାଥ ରାୟ ସର୍ବପ୍ରଥମେ ପ୍ରେମ ଓ ପ୍ରଣୟର ଚିତ୍ରକୁ ଅଧିକ ଇନ୍ଦ୍ରିୟ ପରାୟଣ, ପାର୍ଥିବ ଓ ଜୀବନନିଷ୍ଠ କରି ପାରିଥିଲେ।

ଯଦି ଆମ ସାହିତ୍ୟ ପ୍ରତ୍ୟକ୍ଷରେ ବା ପରୋକ୍ଷରେ ମଣିଷର ଜୀବନ ଲୀଳାକୁ ହିଁ ରୂପଦେଉଛି, ତାହେଲେ ପ୍ରେମ ଜୀବନର ବିସ୍ତୀର୍ଣ୍ଣ ପରିସର ଭିତରେ ଏକ ବ୍ୟାପକ ଅଂଶ ହେବ ନିଶ୍ଚୟ। ଏତିକି ବାସ୍ତବତାକୁ ଚିତ୍ରଣ କରିବାରେ ଅନେକ କବି ଶୁଚି ବିକାର ଗ୍ରସ୍ତ ହୋଇ ପଡ଼ିଛନ୍ତି।

ସତ୍ୟବାଦୀ ଯୁଗର ବରିଷ୍ଠ କବିମାନେ ପ୍ରେମ-ପ୍ରଣୟର ଚିତ୍ରକୁ ଯଥା ସଂଭବ ଇତିହାସ ଓ କିମ୍ବଦନ୍ତୀ ଭିତରେ କେବଳ ସୀମିତ ରଖିଥିଲେ। ଗୋଟେ ନିରଳସ ପାର୍ଥିବ ପ୍ରେମକୁ ମାନବୀୟ ଉଚ୍ଛ୍ୱାସ ଭିତରେ ଲେଖିବାର ଶୁଦ୍ଧ କାବ୍ୟ ଆବେଗ ତଥାପି ସେ ଯାବତ୍ ପରିଲକ୍ଷିତ ହୁଏନା।

ସବୁଜ ମାନେ ତ 'ଆକାଶ ପରୀ', 'ଗୋଲାପ ପରୀ' ମାନଙ୍କ କଥାକୁ ଶୁଣାଇ ଶୁଣାଇ ମାଟି ଓ ମଣିଷ ଠାରୁ ପ୍ରାୟ ଦୂରକୁ ଘୁଞ୍ଚି ଗଲେ। ଧୂଳି ଧୂସରିତ ପୃଥିବୀର ପ୍ରେମ କାହାଣୀଟିଏ ତଥାପି ଜୀବନ୍ତ ହୋଇ ଆମ ସାହିତ୍ୟରେ ବହୁ କାଳ ପର୍ଯ୍ୟନ୍ତ ଉଭାସିତ ହୋଇ ପାରିନଥିଲା। ରୋମାଣ୍ଟିକ୍ ଯୁଗର ଅଗ୍ରନାୟକ ଡକ୍ଟରମାୟାଧରମାନସିଂହ ଇଂରାଜୀ କବି ଜନ୍ କୀଟ୍ସ୍ (John Keats)ଙ୍କ ପରି ଦୈହିକ ପ୍ରେମ (Passionate Love)ର ଚିତ୍ରଣ କଲେ। ଓଡ଼ିଆ କବିତା ତାଙ୍କରି କଲମରେ ଅଧିକ ବାସ୍ତବ ଓ ଜୀବନମୟ ହେବାକୁ ଲାଗିଲା। ମାନସିଂହ ହିଁ ଥିଲେ ପ୍ରେମ ପ୍ରଣୟର ରୂପକାର। ମାନବୀୟ ପ୍ରେମକୁ ସେ ଗୌରବାନ୍ୱିତ କରି ଯାଇଛନ୍ତି। ତା'କୁ ଆହୁରି ରକ୍ତ ମାଂସର ସ୍ପନ୍ଦନ ଆଡ଼କୁ ନେଇ ଆସି ପାରିଛନ୍ତି କବି ବିନୋଦ ଚନ୍ଦ୍ର ନାୟକ। ନୀଳଚନ୍ଦ୍ରର ଉପତ୍ୟକା କବିତା ସଙ୍କଳନରେ ସ୍ଥାନିତ 'ଶୁଆସାରୀ' କବିତାଟି ନାରୀ ପୁରୁଷ ଭାବର ଏକ ମଂଜୁଳ ଭାଷାରୂପ। ତାଙ୍କର ଅଧିକାଂଶ କବିତା ମନଗହନର ପ୍ରଣୟ ବ୍ୟାକୁଳତାକୁ

ହିଁ ବହୁଭାବରେ ପ୍ରତୀକିତ କରିଛି। ନାରୀ ପୁରୁଷର ମୂଳ ଓ ଏକାନ୍ତ ଆଦିମ ବିବର୍ଜନୀୟ ସମ୍ବନ୍ଧକୁ ହିଁ ସେ ଅଧିକ ସରସ କରି ଚିତ୍ରଣ କରିଛନ୍ତି।

ଯୌନ ପ୍ରେମ (Sexual love) ଅସ୍ୱର୍ଗୀୟ ବୋଲି ସେ ଆଦୌ ମନେ କରି ନାହାନ୍ତି। ନାରୀ ଦେହକୁ ସେ ଅପବିତ୍ର ବୋଲି ଭାବି ନାହାନ୍ତି। ଏହି ଦୃଷ୍ଟିରୁ ମାୟାଧର ମାନସିଂହ ଓ ବିନୋଦ ଚନ୍ଦ୍ର ନାୟକ ପ୍ରକୃତ ଭାବେ ସମଧର୍ମୀ । ନାରୀ ଦେହ ସେମାନଙ୍କୁ ପବିତ୍ର ଭୂଗୋଳ ପରି ଲାଗିଛି। ରୂପାନୁଭୂତି ସର୍ବଦା ଆତ୍ମାର ଉଲ୍ଲାସ ସହିତ ଯୋଡ଼ି ହୋଇଥାଏ ବୋଲି ସେମାନେ ଯେପରି ଉପଲବଧି କରିଛନ୍ତି।

ମାୟାଧର ମାନସିଂହଙ୍କ 'ତୃପ୍ତି ଖୋଜି ଏଣେ ତେଣେ ଧାଇଁ ଥିବି ଯାହା' ('ଜନ୍ମ ଜନ୍ମାନ୍ତର') 'ଭ୍ରମି ଭ୍ରମି କ୍ଳାନ୍ତ ମୁହିଁ ଆନନ୍ଦ ସନ୍ଧାନେ' (କସ୍ତୁରୀମୃଗ) କବିତାଂଶର ଭାବଧାରା ଆତ୍ମାର ଉଲ୍ଲାସକୁ ପ୍ରତିପାଦନ କରେ।

ବିନୋଦ ନାୟକଙ୍କ କାବ୍ୟ ଚେତନାକୁ ପ୍ରଣୟ ଭାବନା ବିଶେଷ ଭାବେ ଆବୋରି ବସିଛି। ଏହା କ୍ରମଶଃ ଗଭୀରତର ହୋଇଛି। ପରକୀୟା ପ୍ରେମ ଭାବନାରେ ସେ ଅଧିକ ଉଚ୍ଛ୍ୱସିତ ଓ ଆସକ୍ତ ।

ତାଙ୍କ ପ୍ରଣୟିନୀ ଯେମିତି ଅଭିସାରିଣୀ ସେମିତି ରସବତୀ। ବିନୋଦ ଚନ୍ଦ୍ର ଯେମିତି ଆଗ ନବ ତରୁଣୀଙ୍କ ପାଇଁ ବିମୋହିତ ହୋଇଛନ୍ତି ତାପରେ ତା'କୁ ଶବ୍ଦରେ ଅଭିଲିପିତ କରିଛନ୍ତି। ତାଙ୍କ କବିଚିତ୍ତ ଗୋଟେ ବିଦଗ୍ଧ ପ୍ରେମୀ ହୃଦୟର ପରିଚୟ ଦେଇଛି। ତାଙ୍କର ଏହି ପ୍ରେମିକତା ଏତେ ଉଚ୍ଛ୍ୱାସ ଓ ମାର୍ମିକ ଯେ ସତେ ଯେପରି ତାହା କୂଳଲଂଘି ପ୍ରବାହିତ ହୋଇ ଯାଉଛି ।

ତାଙ୍କ ମତରେ ଯୌନପ୍ରେମ ପ୍ରାଣର ଏକ ଗଭୀର ସମ୍ବେଦନଶୀଳତା ଓ ସୃଜନଶୀଳତାର ଅନୁପ୍ରେରକ । କବି ମାନସିଂହଙ୍କ ପରି କବି ବିନୋଦ ନାୟକ କି ଦେହକୁ ପ୍ରେମର ଭୂଗୋଳ ବୋଲି ମନେ କରିଛନ୍ତି। ମନୁଷ୍ୟ ହୃଦୟ କେବଳ ପ୍ରେମର ବିକାଶ ଘଟାଇ ପାରେ ଓ ବିକଶିତ ପ୍ରେମର ପ୍ରବଣତାକୁ ଉପଲବଧି କରିପାରେ।

ଉଲଙ୍ଗ ଶୃଙ୍ଗାରିକତା ସତ୍ତ୍ୱେ ମଧ୍ୟଯୁଗ ସାହିତ୍ୟ ଅନେକାଂଶରେ ପ୍ରାଣହୀନ ପ୍ରେମର ଛବି ଆଙ୍କିଛି। ମାନସିଂହ ପରକୀୟା ପ୍ରେମର ଛବି ଅଧିକ ଆଙ୍କିଥିଲେ ବି ସ୍ୱକୀୟାର ଜୀବନ୍ତ ଅଭିବ୍ୟକ୍ତି ତାଙ୍କ କବିତା ସମଗ୍ରରେ ପରିଲକ୍ଷିତ। ମାତ୍ର କବି ବିନୋଦ ଚନ୍ଦ୍ର ନାୟକ ମୁଖ୍ୟତଃ ପରକୀୟା ପ୍ରେମର ସ୍ଥପତି ଥିଲେ ।

ବିନୋଦ ନାୟକଙ୍କ କଳ୍ପନା ବିଳାସ ମୁଖ୍ୟତଃ ନାରୀ କୈନ୍ଦ୍ରିକ, ଯଦିଓ ପ୍ରକୃତି ତାଙ୍କ କବିତାରେ ଏକ ବୃହତ ଅଂଶ। ଆପାତତଃ ପଳାୟନବାଦୀ ମନେ ହେଲେହେଁ ସେ ପ୍ରେମ ସହିତ ଜୀବନ ଖୋଜିଛନ୍ତି। ଜୀବନର ସ୍ତବପାଠ କରିଛନ୍ତି। ଜୀବନକୁ ଦୁଃଖ ପୂର୍ଣ୍ଣ ବୋଲି ନକହି 'ଖୋଦାର ମେହରବାନି' ବୋଲି ଅଭିହିତ କରିଛନ୍ତି—

ତଳରେ ଜମିନ ଉପରେ ଏ ଆସମାନ୍

ଏ ଜୀବନ ସଖି ଖୋଦାର ମେହେରବାନି
ଗାଅ ଗାଅ ତେଣୁ କ୍ଷଣକର ଜୟଗାନ
କଣ୍ଠରୁ ପୋଛ କୁଣ୍ଠିତ ମୃଢ଼ବାଣୀ
X X X X
ମୃଗତୃଷ୍ଣାର ସପନ ବିଳାସ ପାଇଁ
ମରଣ ପରେ ମୁଁ ସ୍ୱର୍ଗର ନାହିଁ ମାନି
ତଳରେ ଜମିନ୍ ଉପରେ ଏ ଆ୍ସମାନ୍
ଜାଣେ ଏ ଜୀବନ ଖୋଦାର ମେହେରବାନି।

('ଜମିନ୍ ଆସମାନ୍')

ରାଧାନାଥଙ୍କ ଠାରୁ ଓଡ଼ିଆ ସାହିତ୍ୟରେ ଯେଉଁ ସ୍ୱୈରବାଦୀ ଅନୁଚିନ୍ତାର ପ୍ରବାହ ପରିଲକ୍ଷିତ ସେଥିରେ ବିନୋଦ ଚନ୍ଦ୍ର ନାୟକଙ୍କ କବିତା ବହୁଭାବରେ ତଥାପି ନୂଆ ଭଳି ଲାଗେ। ସଖୀ ପାଇଁ ପ୍ରାଣର କି ଉଚ୍ଛ୍ୱାସ ତା'କୁ ସାଧାରଣ ମାନେ ବୁଝନ୍ତି ନାହିଁ ବରଂ ପାପ ବୋଲି କହନ୍ତି। ମାନସିଂହ ଯଥାର୍ଥରେ ସେପାଇଁ ଲେଖିଛନ୍ତି—

ସ୍ନେହ ଯେ ଜୀବନେ କହିଦିଏ ପାପ ମାଜଣା
ନାହିଁ ଜାଣେ ସଖୀ ମୂର୍ଖ ଜନତା
ପାପ ବୋଲି କଲେ ପ୍ରଣୟ ମମତା
ଅଶ୍ରୁ ଧଉତ ପୀରତି କି ପାପ ଘଟଣା
ମୂର୍ଖ ଜନତା ବୁଝେ ନାହିଁ ପ୍ରୀତି ରଚନା—

('ପାପ ଓ ପ୍ରେମ')

ସ୍ୱୈରବାଦୀ କବି ବିନୋଦ ଚନ୍ଦ୍ର ନାୟକଙ୍କ ସ୍ପର୍ଶକାତର ଚେତନାରେ ନାରୀ ସୌନ୍ଦର୍ଯ୍ୟ ଯେପରି ବ୍ୟାପକ, ସେହିପରି ବିଚିତ୍ର।

---

ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ନିୟମିତ ଲେଖନୀ ଚାଳନା କରିଥିବା କବି ବିନୋଦ ନାୟକ ଓଡ଼ିଆ ସାହିତ୍ୟରେ ଏକ ଅତି ପରିଚିତ ନାଁ । ସୁନ୍ଦରଗଡ଼ ପରି ବଣ ପାହାଡ଼ ଘେରା ଏକ ମାଳ ଅଞ୍ଚଳରେ କବି ତାଙ୍କର ଶୈଶବ ଅତିବାହିତ କରିଥିଲେ । ଲୋକ ସାହିତ୍ୟ ଓ ସଂସ୍କୃତି ତାଙ୍କୁ ବିଶେଷ ଭାବେ ପ୍ରଭାବିତ କରିଥିଲା । ସେ ଅଧିକ ବିଶ୍ୱମୁଖୀ ହୋଇଥିଲେ ହେଁ ବହୁ ଆଞ୍ଚଳିକ ଚିତ୍ର ତାଙ୍କ ସାହିତ୍ୟରେ ଫୁଟି ଉଠିଛି । ତାଙ୍କ କବିତାରେ ମାଟି ଓ ଆକାଶର ବର୍ଣ୍ଣନା ସବୁଠାରୁ ବେଶୀ ମାର୍ମିକ ହୋଇଛି । ଶବ୍ଦ ଚୟନରେ ସେ ଥିଲେ ଅଧିକ ଶାସ୍ତ୍ରୀୟ ଓ ବିଚକ୍ଷଣ ଦୂର ପୃଥିବୀର କଥା କହିଲା ବେଳେ ସୃଜନ ଅନୁଭବ ତାଙ୍କର ସମୁନ୍ନତ ସ୍ତରକୁ ଉନ୍ନୀତ ହୋଇଯାଇଛି । କବି ବିନୋଦ ଚନ୍ଦ୍ର ନାୟକଙ୍କ ମତରେ କବିତା ହେଲା ଆତ୍ମା ଏବଂ ଆତ୍ମା ମଧ୍ୟରେ ବିନିମୟ ହେଉଥିବା ଏକ ଅନିର୍ବଚନୀୟ ଭାଷା । ବିନୋଦ ନାୟକଙ୍କ କବିତା ସ୍ମୃତିପରି ବେଦନା ବିମଥିତ ହେଲେ ବି ମଧୁର ଲାଗେ । ତାଙ୍କ ମତରେ ସତେ ଯେପରି ଶ୍ରମ ନାହିଁତ ଜୀବନ ନାହିଁ ।

ଆଦିକନ୍ଦ ସାହୁ ଜଣେ ମନନଧର୍ମୀ ଗାଳ୍ପିକ ଓ ସମାଲୋଚକ ହିସାବରେ ସୁପରିଚିତ । ବିଶ୍ୱବିଦ୍ୟାଳୟ ସ୍ତରୀୟ ଓଡ଼ିଆ ଭାଷା ସାହିତ୍ୟର ଅଧ୍ୟାପନା ଓ ଗବେଷଣା ସହିତ ଦୀର୍ଘ ଦିନର ସଂପୃକ୍ତି ତାଙ୍କୁ ଦେଇଛି ପ୍ରଚୁର ସମ୍ମାନ । ସଂପ୍ରତି ଓଡ଼ିଆ ସାହିତ୍ୟସେବାରେ ନିମଗ୍ନ ପ୍ରଫେସର ସାହୁ ଭୁବନେଶ୍ୱରରେ ଅବସ୍ଥାପିତ ।

ମୂଲ୍ୟ : ୪୦ ଟଙ୍କା

ISBN : 978-81-260-3293-8

